# ଅଭାଗିନୀର ସ୍ୱର୍ଗ

( ସାମାଜିକ ନାଟକ )



ଗୋପାଳ ଛୋଟରାୟ

ପ୍ରକାଶକ :—

କଳିଙ୍ଗ ଗ୍ରନ୍ଥ ମନ୍ଦିର

ବାଙ୍କାବଜାର, କଟକ—୨

ପ୍ରଥମ ପ୍ରକାଶ

ଦଶହରା—୧୯୬୨

ମୁଦ୍ରାକର

ଅବଦୁଲ୍ ହମିଦ ନାଶାଦ

ସୋସାଇଟି ପ୍ରେସ

କେଶରପୁର, କଟକ-୧

ମୂଲ୍ୟ ଦୁଇଟଙ୍କା ପଞ୍ଚସ୍ତରୀ ନୂଆ ପଇସା

# ଉତ୍ସର୍ଗ

ମୋର ସହକର୍ମୀ—ସହଧର୍ମୀ
ବନ୍ଧୁ ଶ୍ରୀ ନରସିଂହ ମହାପାତ୍ର
କର କମଳେଷୁ

**ଗୋପାଳ ଛୋଟରାୟ**

ଗୋପାଳ ଛୋଟରାୟଙ୍କ ଲିଖିତ କେତୋଟି ଯୁଗପୋଯୋଗୀ
ସାମାଜିକ ନାଟକ

ମଲ୍ଲଜହ୍ନ

ନଷ୍ଟ ଉର୍ବଶୀ

ଶଙ୍ଖା ସିନ୍ଦୂର

ନୂଆ ବୋଉ

ପଥିକ ବନ୍ଧୁ

ପ୍ରତିଭା

ପର କଲମ

ଭରସା

ଅମଡ଼ା ବାଟ

ଫେରିଆ

ଅର୍ଦ୍ଧାଙ୍ଗିନୀ

ଝନ୍‌ଜା

ଜନଶତ୍ରୁ

ପଦ୍ମାଳୟା

ଘଟକ

ବୋଲେ ହୁଁ ଟି

ଓ

ପୂରପୂର୍ଣ୍ଣ ପାରିବାରିକ

ଅନ୍ନପୂର୍ଣ୍ଣା ବି. ଗ୍ରୁପଙ୍କଦ୍ୱାରା ପ୍ରଶଂସାର ସହିତ ଓ
ପୂର୍ଣ୍ଣପ୍ରେକ୍ଷାଳୟରେ ଶତାଧିକ ରଜନୀ ଅଭିନୀତ

# "ସଙ୍ଗଠନରେ"

ରଚନା—**ଗୋପାଳ ଛୋଟରାୟ**

ପରିଚାଳନା—**ପ୍ରିୟନାଥ ମିଶ୍ର**

ସଙ୍ଗୀତ ରଚନା—**କବିଚନ୍ଦ୍ର କାଳିଚରଣ ପଟ୍ଟନାଏକ**

ସ୍ୱରସଂଯୋଜନା—**ବାଳକୃଷ୍ଣ ଦାସ**

# ରୂପାୟନରେ

## —ପୁରୁଷ—

ପିର, କେଶବ, ମାଧବ, ହରି, ବାବାଜି, ରଘୁ ଓ ଅନ୍ୟମାନେ ।

## —ସ୍ତ୍ରୀ—

ଲୀଳା, ମହାରାଜମା, ମେନା, କୃଷ୍ଣା ।

ବହୁ ପରୀକ୍ଷା, ନିରୀକ୍ଷା; ଆଲୋଚନା ଓ ସମାଲୋଚନା ଫଳରେ ମୂଳ ରଚନାର କେତେକ ପରିବର୍ତ୍ତନ କରାଯାଇ ଏ ନାଟକ ପ୍ରକାଶିତ ହେଲା ।

ନାଟ୍ୟକାର



# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

( କଟକ ସହରର ଅପେକ୍ଷାକୃତ ଅନୁନ୍ନତ ଅଞ୍ଚଳର ଗୋଟିଏ ଛୋଟା ମଟିର ଘରର ମୁଖ୍ୟ କୋଠରୀ । ବାହାରୁ ଏ ଘରକୁ ଆସିବାକୁ ହେଲେ ପ୍ରଥମେ ଏଇ କୋଠରୀକୁ ଆସିବାକୁ ହୁଏ । ଖଣ୍ଡିଏ ଜୀର୍ଣ୍ଣ ଟେବୁଲ—ଗୋଟିଏ ହାତ ଭଙ୍ଗା ବେଞ୍ଚ—ଗୋଟିଏ ଦୁଇଟି ଟିଣ ଚୌକି ହେଲା ଏ କୋଠରୀର ମୁଖ୍ୟ ଆସବାବ ପତ୍ର । ଗୋଟିଏ କଡ଼କୁ ଅଣଓସାରିଆ ତକ୍ତପୋଷ ଖଣ୍ଡିଏ—ତା ଉପରେ ପଡ଼ିଚି ଖଣ୍ଡିଏ ଅର୍ଦ୍ଧ-ମଳିନ ସପ ଓ ତଦନୁରୂପ ଅବସ୍ଥାର ଗୋଟିଏ ତକିଆ । ତା'ପାଖକୁ ଲାଗି ହେଉଚି ଗୋଟିଏ ଶସ୍ତା କାଠ ଠିଆଳ ଥାକ । କେତେ ଖଣ୍ଡି ବହି, ଖାତା ସହିତ ଅନ୍ୟ କେତେକ ଜିନିଷ ମଙ୍କ-ସ୍ଥାନ ହୋଇ, ଥାକରେ ରହିଚି । ତକ୍ତପୋଷର ଶୀର୍ଣ୍ଣ ମଶାରୀ ବାଡ଼ା କେବଳ ଗୋଟିଏ କୁଳ—ଗୋତ୍ର—ହୀନ ମଶାରୀକୁ ଆଶ୍ରୟ ଦେଇନ—ବାଡ଼ା ଉପରେ ବିପର୍ଯ୍ୟସ୍ତ ହୋଇ ପଡ଼ିଚି କେଇଖଣ୍ଡ ଉଜୁଆ—ଲୁଗା—ଗେଞ୍ଜି ଓ ଜାମା ଇତ୍ୟାଦି ।

କୋଠରୀଟିକୁ ଭିତରପଟ ସହିତ ସଂଯୁକ୍ତ କରୁଥିବା ଦ୍ୱାର ଦେଶରେ ଅବଶ୍ୟ ପର୍ଦ୍ଦାଟିଏ ଝୁଲୁଛି, କିନ୍ତୁ ପର୍ଦ୍ଦାଟି କନାର ନୁହେଁ—କେତେ ପାଲର ।

ଶୀତ ଦିନର ସକାଳ । ଏ ପର୍ଯ୍ୟନ୍ତ ସୂର୍ଯ୍ୟୋଦୟ ହୋଇନି ! କୋଠରୀଟି ପୂର୍ଣ୍ଣ ଆଲୋକିତ ନୁହେଁ । ପର୍ଦ୍ଦା ହଟିବା ସାଙ୍ଗେ ସାଙ୍ଗେ ବାହାରୁ ଡାକି ଡାକି ପ୍ରବେଶ କଲା ରାଜୁ )

ରାଜୁ—ମଞ୍ଜୁସା ! ମଞ୍ଜୁସା !

( ସଦର ଦରଜା ଖୋଲିଥିଲା । ଅପେକ୍ଷା ନ କରି କେଠରୀ ଭିତରକୁ ଡାକି ଡାକି ରାଜୁ ପଶି ଆସିଲା । ବୟସ ପ୍ରାୟ ୩୨ ବର୍ଷ ମଧ୍ୟବିତ୍ତ ଶ୍ରେଣୀର ଶିକ୍ଷିତ ସ୍ୱାସ୍ଥ୍ୟବାନ ଯୁବକ । ପରିଧାନ ଧଳା ଧୋତି ଓ ଉଚ୍ଚ ଗଳାବନ୍ଦ ଗରମ କନାର କୋଟ୍ । ପାଦରେ ସାଣ୍ଡାଲ )

ରାଜୁ—ମଞ୍ଜୁସା ! ମଞ୍ଜୁସା !

( ଅସ୍ତ ବ୍ୟସ୍ତ ହୋଇ ପର୍ଦ୍ଦା ଟେଲି ବାହାରି ଆସିଲେ ଗୃହସ୍ୱାମୀ ପ୍ରୌଢ଼ ଶ୍ୟାମ ଚୌଧୁରୀ । ଦେହରେ ଖଣ୍ଡିଏ ଚାଦର )

ଶ୍ୟାମ—ରାଜୁ ! ତୁ ଆସିଲୁ ବାପ ? ଏତେ ଭୋରରୁ ?

ରାଜୁ—କାଲି ରାତି ପ୍ରାୟ ବାରଟା ବେଳେ ମୁଁ ଆସିଥିଲି । ବାହାରେ ତାଲା ପଡ଼ିଥିଲା···ମୁଁ ଫେରିଗଲି ।

( କଣ ପାଉଥାଏ ରାଜୁ ଆସିଛି ବୋଲି ସେ କୋଟିନିଧି ପାଇଗଲେ । କିନ୍ତୁ ଏ ଘରେ ଇତିମଧ୍ୟ ଗୋଟାଏ ଘଟଣା ଘଟିଛି— ଯାହା ରାଜୁ ପକ୍ଷରେ ମଧ୍ୟ ଦୁଃଖଦାୟକ । ସେଇ ଚିନ୍ତାରେ ତାଙ୍କ ମୁହଁ ସଙ୍ଗେ ସଙ୍ଗେ ମଉଳି ପଡ଼ିଲା )

ଶ୍ୟାମ—ରାତିବାରଟା ବେଳେ ତୁ ଆସିଥିଲୁ ?

ରାଜୁ—ଶୁଣିଲି, ଆପଣ କାଲି ମୋ ବସାକୁ ଯାଇଥିଲେ, ମୁଁ କାଲି ଭୋର ଗାଡ଼ିରେ ଗାଁକୁ ଚାଲି ଯାଇଥିଲି । ଫେରିଲି-ରାତି ପ୍ରାୟ ବାରଟା ବେଳେ, ଖବର ପାଇ ସଙ୍ଗେ ସଙ୍ଗେ ଏଠିକି ଆସିଲି । କିନ୍ତୁ···

ଶାମ--ହଁ—ପଅରଦନ ରାତ୍ତି ପାହାନ୍ତାରୁ, କାଲିରାତି ଦୁଇଟା ପର୍ଯ୍ୟନ୍ତ—ମୁଁ କୁଆଡ଼େ ଯାଇଚ—କ'ଣ କରିଚ—ତା'ର ହିସାବ୍ ମୁଁ ନିଜେ ବି ଦେଇ ପାରିବନି ।···ତୁ କ'ଣ ପୋଲିସଠୁଁ ଖବର ପାଇ···

ରାଜୁ—ନାଁ ତ ! ପୋଲିସ କଥା ତ ମୁଁ କିଛି ଜାଣିନି । ଆପଣଙ୍କୁ ପାଇଲିନି ବୋଲି, ଥାନାକୁ ମୁଁ ଏକା ଯିବା ଉଚିତ ମନେ କଲିନି ।

ଶାମ—ଆଉ ତେବେ କି ଖବର କଥା ତୁ କହୁଚୁ ।

ରାଜୁ—ଖବର କାଗଜର ଏଇ ଖବର ! ( ପକେଟରୁ ଖଣ୍ଡେ ଓଡ଼ିଆ ଖବର କାଗଜ ବାହାର କଲା )

ଶାମ—ଖବର କାଗଜ !!! ଏ ଖବର ତା'ହେଲେ କାଗଜରେ ବାହାରି ଯାଇଚି ।

ରାଜୁ—ହଁ, ଆପଣ କ'ଣ କାଲିର କାଗଜ ପଢ଼ି ନାହାନ୍ତି ।

ଶାମ—ନା— ( କାନ୍ଦୁଥାନ୍ତି ) ···ଆଉ ତେବେ କିଛି ବାକି ରହିଲା ନାହିଁ ।

ରାଜୁ—ଆପଣ ଏତେ ବ୍ୟସ୍ତ ହଉଚନ୍ତି କାହିଁକି ମଉସା ? ଖବର କାଗଜରେ ଯାହା ବାହାରିଚି—ସେଥିରେ ତ ଗୀତାକୁ କେହି ଦୋଷ ଦେଇ ପାରିବନି ।

ଶାମ—ଗୀତାର ଦୋଷ କେହି ଦେବେ ନାହିଁ । ହେଲେ, ସ୍ତ୍ରୀ ପରେ ତା'ର କି ଗୁଣ କଏ ଗାଇବ କହିଲୁ ବାପ ? ···ଶାମ ଚୌଧୁରୀ ଝିଅ ଗୀତା—ଦେଖିବାକୁ ସୁନ୍ଦରୀ—କାମ ଦାମରେ ଧୂରନ୍ଧର—ପାଠ ଶାଠ ଦି'ଅକ୍ଷର ବି ପଢ଼ିଚି । ଏକଥା ଯିଏ ଏଣିକି କହିବ

—ତାକୁତ ଲୋକେ ହସରେ ଉଡେଇ ଦେବେ। ମୁଁ ଘର୍ରୁ ଗୋଡ଼ କାଢିଲେ ଲୋକେ ଏଣିକି କହିବେ—ଏଇ ସେ ଶାମ ଚୌଧୁରୀ···ଆଉ ସ୍ୱୀର ଝିଅ ଗୀତା—

ରାଜୁ—(ବାଧା ଦେଇ) ଏ, ଆଲୋଚନାର ବେଳ ଏ ନୁହେଁ ମଉସା।

ଶାମ—ପଢିଲୁ ରାଜୁ···କାଗଜରେ କଣ ବାହାରିଚି···ପଢିଲୁ···

(ପୂର୍ବ ଦଉର ଝରକାଟି ରାଜୁ ଖୋଲି ଦେଲା। ପହିଲି ସୂର୍ଯ୍ୟର କରଣରେ କୋଠରୀଟି ସାମାନ୍ୟ ଆଲୋକିତ ହୋଇ ଉଠିଲା)

ରାଜୁ—(ପଢିଲା) "ଟେଲିଫୋନ ସମ୍ବାଦ। ଖଡ଼ଗପୁର—ତା ୨୧।୧୧ ଅଠର ଉଣେଇଶି ବର୍ଷ ବୟସର ଗୋଟିଏ ଓଡ଼ିଆ ଭଦ୍ର ଘରେ ଅବିବାହିତା ଯୁବତୀକୁ ଭୁଲେଇ ଆଣିଥିବା ଅପରାଧରେ, ଆଜି ସକାଳେ ଖଡ଼ଗପୁର ପୋଲିସ ଏଠାରେ କିଶୋର ଚନ୍ଦ୍ର ଦାସ ନାମକ, ଜଣେ ଯୁବକକୁ ଗିରଫ କରିଛନ୍ତି। ଯୁବତୀଟିର ନାମ ଗୀତା। ସେ କଟକର ଶାମ ଚୌଧୁରୀ ନାମକ ଜଣେ ଭଦ୍ର-ବ୍ୟକ୍ତିଙ୍କ କନ୍ୟା। ଖବର ନେବାରେ ଜଣାଯାଏ ଯେ ଯୁବତୀର ପିତା ଅର୍ଥାଭାବରୁ ତା'ର ବିବାହ ଦବାକୁ ସକ୍ଷମ ହୋଇ ନ ପାରିବାରୁ, ଅଭିଯୁକ୍ତ ଯୁବକ ବିବାହର ମିଥ୍ୟା ପ୍ରଲୋଭନ ଦେଖାଇ, ଗୀତାକୁ ଖଡ଼ଗପୁର ନେଇ ଆସିଲା। କିନ୍ତୁ ଗୀତା ଯୁବକଟିର ଅସତ୍ ଅଭିପ୍ରାୟର ସୂଚନା ପାଇ, କୌଶଳ କ୍ରମେ ପୋଲିସକୁ ସବୁକଥା ଜଣାଇ ଦେଲା। ଫଳରେ କିଶୋର ଗୀତାକୁ ଧରି ଟ୍ରେନରେ ଲୁଚି ପଳେଇ ଯାଉଥିବା ବେଳେ ପୋଲିସ ତାକୁ ଗିରଫ କଲେ। ଗୀତାର ସମସ୍ତ ଦାୟିତ୍ୱ ପୋଲିସ ଗ୍ରହଣ କରିଚନ୍ତି।"

ଶାମ—( କାନ୍ଦି କାନ୍ଦି ) ରାଜୁ—

ରାଜୁ—ଆପଣ ଶୁଣନ୍ତୁ ମଉସା ।

ଶାମ—କାଗଜରେ, କଣ ବାହାରିଚି ରାଜୁ ? ଅର୍ଥାଭାବରୁ ବାପ ଝିଅର ବିବାହ ଦେବାକୁ ସକ୍ଷମ ନ ହେବାରୁ—

ରାଜୁ—ସେ କଥା ବର୍ତ୍ତମାନ ଉଠୁଚି କାହିଁକି ?

ଶାମ—ସେ କଥା ମୁଁ ଉଠେଇଥିଲି ରାଜୁ—ଆଜି ତା'ର ଫଳ ମୁଁ ଆଜି ଭୋଗୁଚି । ...ପଅରଦିନ ସନ୍ଧ୍ୟାରେ ତୁ ଆସିଥିଲୁ ନା ?

ରାଜୁ—ହଁ, ପଅରଦିନ—ମାନେ ଏଇ ତ'୨୧ ତାରିଖ ସନ୍ଧ୍ୟାରେତ ମୁଁ ଆସିଥିଲି । ସେଦିନ ବେଶ ହସ ଖୁସିରେ ଗୀତା ହାତରୁ ଚା' ଖାଇ ମୁଁ ଫେରି ଗଲି । କିନ୍ତୁ କାହିଁ ? ଏ ଦୁର୍ଘଟଣାର କିଛି ହେଲେତ ସୂଚନା ମୁଁ ପାଇ ନଥିଲି !

ଶାମ—ତୁ ଯିବା ପରେ ମୁଁ ଖବର ପାଇଲି—ନଗରପୁର ବାହାଘର ପ୍ରସ୍ତାବ ଭାଙ୍ଗିଗଲା । ଜାଣୁ ତ, ମୁଁ ଭାରି ଆଶା କରିଥିଲି ଏଇଠି ଗୀତାର ବାହାଘର ହେଇଯିବ । ହେଲେ ସେଇ ଦିଆ ନିଆ କଥାରୁ ଏ ପ୍ରସ୍ତାବ ଭାଙ୍ଗିଯିବା ଶୁଣି, ମୋ ମନ ଏକା—ବେଳକେ ଭାଙ୍ଗି ପଡ଼ିଲା । ସେଦିନ ରାତିରେ ଆମେ କେହି କିଛି ଖାଇନୁ । ଗୀତା କାନ୍ଦି କାନ୍ଦି ଶୋଇବାକୁ ଗଲା । ମୁଁ ବି ଉପାସରେ ଶୋଇଲି । ଶୋଇବା ଆଗରୁ ଗୀତାକୁ ଶୁଣେଇ ଶୁଣେଇ ଖାଲି କହିଥିଲି—ଝିଅ ଜନ୍ମକରି ଏମିତି ଗରିବ ବାପ ହେଇ ବଞ୍ଚି ରହିବା ଅପେକ୍ଷା, ବରଂ ବିଷ ଖାଇ ମରିଯିବା ଭଲ ।

ରାଜୁ—ହୁଁ ।

ଶାମ—ରାତି ପାହି ଦାଣ୍ଡା ହେଲେ, ମୋ ନିଦ ଭାଙ୍ଗିଗଲା । ଦେଖିଲି ସଦର ଦରଜା ଖୋଲା—ଗୀତା ତା' ଘରେ ନାହିଁ ।

ରାଜୁ—ତା'ପରେ ପୋଲିସକୁ ଖବର ଦେଲେ ?

ଶାମ—ପାଗଳ ପରି ମୁଁ ରାସ୍ତାରେ ଗୀତାକୁ ଖୋଜି ବୁଲୁଥିଲି ବେଳେ, ଜଣେ କନେଷ୍ଟବଲକୁ ଭେଟିଲି ତା'ପରେ ପୋଲିସ ସବୁ କଥା ଜାଣିଲେ ।

ରାଜୁ—ମଉସା ! ଆପଣ ବର୍ତ୍ତମାନ ଟିକେ ମୋ ସାଙ୍ଗରେ ଆସନ୍ତୁ !

ଶାମ—କୋଉଠିକି ?

ରାଜୁ—ଥାନାକୁ ।

ଶାମ—କାହିଁକି ?

ରାଜୁ—ସେମାନେ ହୁଏତ ଗୀତାର ଖବର ପାଇଥିବେ ।

ଶାମ—ଗୀତା ତ ଆସିଲାଣି ।

ରାଜୁ—ଆସିଲାଣି ? କେମିତି ? କେତେବେଳେ ଆସିଲା ?

ଶାମ—ଏଇ ଘଣ୍ଟାଏ ଆଗରୁ—ପୋଲିସ ଆଣି ତାକୁ ଛାଡ଼ି ଦେଇଗଲେ ।

ରାଜୁ—ଗୀତା କାଇଁ ? କ'ଣ କରୁଚି ସେ ?

ଶାମ—ଆସିଲା ବେଳୁ ସେ ଘରେ କବାଟ କିଲି ଶୋଇ କାନ୍ଦୁଚି ।

ରାଜୁ—ନା—ନା—ଘର ଭିତରେ କବାଟ କିଲି ସେ ରହି ପାରିବ ନାହିଁ । ଗୀତା—ଗୀତା

(ଡାକି ଡାକି ଆଗେଇ ଗଲା ବେଳେ ଗୋଟାଏ ହାତରେ ପର୍ଦ୍ଦା ଟେକି ଧରି ଦୁଆର ମୁହଁରେ ଆସି ଠିଆ ହେଲା ଗୀତା । ସୁନ୍ଦରୀ, ସ୍ୱାସ୍ଥ୍ୟବତୀ ଝିଅ ସେ—କିନ୍ତୁ ଏଇ ଦୁର୍ଘଟଣାର ଝଡ଼ଟା ଯେମିତି ତା'ର ସମସ୍ତ ତାରୁଣ୍ୟକୁ ନଷ୍ଟଭ୍ରଷ୍ଟ କରି ଦେଇଚି । ଗୀତା ଆସି ଦୁଆର ମୁହଁରେ ଠିଆ ହେଲା । ଏଣିକି ଆସିବାର ସାହସ ଯେମିତି ତା'ର ନାହିଁ )

ଶାମ—ମୋ କଥା ସେ ଶୁଣୁ ନଥିଲା ରାଜୁ ! ତୋ' ଡାକ ଶୁଣି ସେ ଆସିଛି । ଭାଇଠୁ ବଳି ଅଧିକ ସ୍ନେହ ମମତା ତା' ପାଇଁ ତୁ ଅଜାଡ଼ି ଦେଇଥିଲୁ । ଆଜି ତା'ର ଏ ଅବସ୍ଥାରେ ତା'କଥା ତୁ ବୁଝ—ତୁ ବୁଝ ।

( କହି କହି ଚାଲିଗଲେ ବାହାରକୁ । ରାଜୁ ଟେବୁଲକୁ ଆଉଜି ଠିଆ ହୋଇଛି ; ଦୁଆର ମୁହଁରେ ତଳକୁ ମୁହଁ ପୋତି ଠିଆ ହୋଇଛି ଗୀତା । କିଛି ସମୟ ପରେ ଗୀତା ଆଉ ପାରିଲା ନାହିଁ । ଗୋଟାଏ ଆବେଗରେ ଘର ଭିତରକୁ ପଶି ଆସି ରାଜୁର ଦୁଇ ଗୋଡ଼କୁ ଧରି କାନ୍ଦିବାକୁ ଲାଗିଲା )

ରାଜୁ—ଗୀତା ! ତୁ'ସ କ'ଣ କରୁଚୁ । ଉଠ ଗୀତା ।

ଗୀତା—ତମେ ମତେ ବିଶ୍ୱାସ କର ରାଜୁଭାଇ—ତମ ପାଦ ଧରି ମୁଁ ଶପଥ କରି କହୁଚି—ମୁଁ ନିର୍ଦ୍ଦୋଷ...

( ଖୁବ ଧୈର୍ଯ୍ୟଧରି ରହିବାକୁ ଚେଷ୍ଟାକରି ସୁଦ୍ଧା ରାଜୁ ବିଚଳିତ ହୋଇ ପଡୁଥାଏ )

ରାଜୁ—ମୁଁ ଜାଣେ, ତୁ ନିର୍ଦ୍ଦୋଷ—ତୁ ନିଷ୍କଳଙ୍କ । ସେ ବିଶ୍ୱାସ ତୋ'ଠାରେ ନ ଥିଲେ, ମୁଁ ଆଜି ଏଠିକି ଆସି ନଥାନ୍ତି ।

ଗୀତା—( ଉଠି ଠିଆହୋଇ ) ଏ କେଇ ଘଣ୍ଟା ଭିତରେ ଅନେକ କଥା ମୁଁ ଭାବିଚି । ଅନେକ ପାପ—ଚିନ୍ତା ମୋ ମନକୁ ଆସିଚି । କିନ୍ତୁ ମୁଁ କିଛି କରି ପାରିନି । ପୋଲିସ ମତେ ଆଣି ବାପାଙ୍କ ପାଖରେ ଛାଡ଼ି ଦେଇଗଲେ । କିନ୍ତୁ କାହିଁ ? ବାପାଙ୍କ ପାଖରେ ମୁଁ ମୋର ରାହା ଖୋଜି ପାଉନି । ବେଳକୁ ବେଳ ତାଙ୍କ ପାଖରେ ମୁଁ ବେଶୀ ଅପରାଧି ହୋଇ ପଡ଼ୁଚି । ମୁଁ ତମକୁ ଅପେକ୍ଷା କରି ରହିଥିଲି ଭାଇ ! ତମେ ମତେ କୁହ, ମୁଁ କ'ଣ କରିବି !

ରାଜୁ—ଏଇ—ସେ ଛକ ମୁଣ୍ଡରେ ସେ ଯୋଉ ବଡ଼ ଦୋ' ମହଲା କୋଠା ଟା—ସେ'କୋଠା ମାଲିକଙ୍କୁ ଜାଣୁ ?

ଗୀତା—ଜାଣେ ।

ରାଜୁ—ମଦନ ବାବୁ ବଡ଼ ସରକାରୀ ଚାକରୀ କରୁଥିଲେ—ବର୍ତ୍ତମାନ ପେନ୍‌ସନ୍ ନେଲେଣି । ଖୁବ୍ ଧନୀ । ଏବେ ଏଇ ଦି ବର୍ଷ ହେଲା ଏଠି କୋଠା କରି ଆସି ରହିଛନ୍ତି । ତାଙ୍କ ଘରର ଇତିହାସ ଜାଣୁ ?

ଗୀତା—ଇତିହାସ ।

ରାଜୁ—ପ୍ରାୟ ଦଶ ବାର ବର୍ଷ ତଳେ ତାଙ୍କ ବଡ଼ ଝିଅବିବାହ—ଯୋଗ୍ୟା—ଘର ଗୁଣ୍ଡା ଜଣେ ଯୁବକ ସାଙ୍ଗରେ ପଳେଇ ଗଲା, ପୋଲିସ୍ ସାହାଯ୍ୟରେ ପ୍ରାୟ ସପ୍ତାହକ ପରେ ତାକୁ ଫେରାଇ ଆଣିଲେ । ( ଗୀତା ପୁଣି କାନ୍ଦିବାକୁ ଲାଗିଲା )

ତୁ କ'ଣ ଭାବୁଚୁ ଗୀତା ଯେ ଏ ଅବସ୍ଥାରେ ମୁଁ ତତେ ଆଘାତ ଦବା ପାଇଁ ଏକଥା କହୁଚି···ଶୁଣ ମୋ କଥା । ଏତେ ବଡ଼ ଲୋକର ଝିଅ—ଗୋଟାଏ ଇତର ଲୋକ ସହିତ ପଳେଇ ଯାଇଚି—ସମସ୍ତେ ଜାଣିଲେ, ଏଇଠି ତା'ର ଜୀବନ ବ୍ୟର୍ଥ ହୋଇଗଲା । ···କିନ୍ତୁ ଉପଯୁକ୍ତ ସ୍ଥାନରେ ବିବାହ କରି, ସ୍ୱାମୀ—ସନ୍ତାନ ନେଇ ସେ ଆଜି ଅତି ସାର୍ଥକ ଜୀବନ କଟଉଚି । ପଚିଶ ହଜାର ଟଙ୍କା ଖର୍ଚ୍ଚ କରିବାର କ୍ଷମତା ଯାହାର ଥିବ, ତା' ପକ୍ଷରେ ଏ କଳଙ୍କ ଅତି ତୁଚ୍ଛ । ( ଗୀତା ନିର୍ବୋଧଙ୍କ ଭଳି ଖାଲି ଶୁଣୁଥାଏ ) ଆଚ୍ଛା ତମ ଏଇ ବସ୍ତି ପଛ ପଟେ ଯିଏ ଥାଏ—ଦିନ ମଜୁରିଆ ବରଜା···ତା' ପରିବାରର ଇତିହାସ ଜାଣୁ ?

ଗୀତା— ( ନିର୍ବାକ ହୋଇ ଶୁଣୁଥାଏ)

ରାଜୁ—ବାହାଘରର ମୋଟେ ଛଅମାସ ପରେ, ତା' ସ୍ତ୍ରୀ ଆଉ ଜଣକ ସାଙ୍ଗରେ ଘରୁ ଗୋଡ଼ କାଢ଼ି ଚାଲି ଯାଇଥିଲା ।···ଆଉ ଆଜି ଦେଖୁଚୁ ? ସେଇ ସ୍ତ୍ରୀକୁ ନେଇ ସେ ମହାନନ୍ଦରେ ଘର ସଂସାର କରି ରହୁଚି ।

ଗୀତା—ରାଜୁଭାଇ ।

( କ'ଣ କହିବାକୁ ଯାଇ କହି ପାରିଲାନି )

ରାଜୁ—ଯାହାର ଧନ ଅଛି,—ସେ ଧନ ବଳରେ ସମାଜକୁ ନିଜ ପାଦ ତଳକୁ ଟାଣି ଆଣି ପାରିଚି । ଯାହାର ଧନ ନାହିଁ 'କି' ସମାଜ ନାହିଁ—ତା'ର ପ୍ରେ ଦୁଶ୍ଚିନ୍ତା ନାହିଁ—ଏ ସମସ୍ୟା ବି ନାହିଁ । କିନ୍ତୁ···ଆମେ ? ଆମେ ଯିଏ ଏ ଦୁଇ ଶ୍ରେଣୀର ମଝିରେ ଠିଆ ହୋଇଚେଁ—ଧନ ଅଉ ସମାଜ ଉଭୟ ଯାହାକୁ ଖିତ ବ୍ୟସ୍ତ କରି ରଖିଚି—ଧନ ବଳରେ ସମାଜକୁ କିଣିବାର କ୍ଷମତା ଯାହାର ନାହିଁ, କି ଧନ ନାହିଁ ବୋଲି ସମାଜକୁ ଛାଡ଼ିବାର କ୍ଷମତା ଯାହାର ନାହିଁ···

ଗୀତା—ତା' ହେଲେ—ତା' ହେଲେ କ'ଣ ରାଜୁଭାଇ ମୋର ଆଉ ଘରକୁ ଫେରିବା ଉଚିତ ନଥିଲା ?

ରାଜୁ—( ହସି ) ପାଗଳୀ ! ଯେତେ ଯାହା ହେଲେ ବି ନିଜର ଅବସ୍ଥା ପ୍ରତି ମଣିଷ ସବୁବେଳେ ସଚେତନ ରହିବା ଉଚିତ—ସେଇଥି ପାଇଁ ତତେ ଏକଥା କହିଲି ।···ମୁଁ ତୋ'ର ସବୁକଥା ଶୁଣିବି ଗୀତା—ତୋ'ର ସବୁ ପ୍ରଶ୍ନର ଉତ୍ତର ମୁଁ ଦେବି । କିନ୍ତୁ ବର୍ତ୍ତମାନ ନୁହେଁ । ତୁ ଆଗ ଯାଇ 'ଚା' ତିଆରି କର ।—ଯା'

—ଆଉ ଠିଆ ହେଲୁ କାହିଁକି ? ମୁଁ ଗୃହ ନ ଖାଇ ସେମିତ ଆସିଛ । ତୋ' ଅବସ୍ଥା, ଆଉ ମଉସାଙ୍କ ଅବସ୍ଥାତ ଦେଖୁଛ ତୁ ଯା—ଗୃହର ବ୍ୟବସ୍ଥା କର—ମୁଁ ଏଇ ଆଗେ ଆଗେ ଆସୁଛ…

( ଗୀତାକୁ ଭିତରକୁ ପଠେଇ ଦେଇ ରାଜୁ ବାହାରକୁ ଗଲା । କିଛିଏ ପରେ ସଦର ଦରଜାକୁ ଆସିଲେ କାହ୍ନୁ ଚରଣ, ମଫସଲର ସାଧାରଣ ପରିବାରର ଲୋକ । କଥା ବାର୍ତ୍ତାରୁ ଜଣାଯାଏ ସହର ସହିତ ପ୍ରତ୍ୟକ୍ଷ ସମ୍ପର୍କ ରହିଛ ! ସେ ଆସି ଶାମଙ୍କ ଘର ସାମନାରେ ଅଟକିଲେ )

କାହ୍ନୁ—ଏଇ ଘରଟା ହବ ନା କ'ଣ ? ··ହଁ ତ । କବାଟ ଖୋଲା ଅଛି । (ଡାକିଲେ) ଘରେ କିଏ ଅଛନ୍ତ ? ଶାମବାବୁ ! ଶାମବାବୁ ଘରେ ଅଛନ୍ତ ? ଶାମବାବୁ କ'ଣ ନିଦରୁ ଉଠି ନାହାନ୍ତ ? ମୁଁ କାହ୍ନୁ ଡାକୁଛ ··କାହ୍ନୁ; ତମ ଭଉଣୀ ଘର ଗାଁ ଘଟପଡ଼ାରୁ ଆସିଛ । (କିଛିଏ ରହି) କି କଥା ଯେ । କବାଟଟା ମେଲା ଅଛି···କେହି ଶୁଣୁ ନାହାନ୍ତ । ଆଉ କ'ଣ ଏ ଘରଟା ନୁହେଁ । ···କାହାକୁ ଏବେ ପଚାରିବ ? (ଦୂରକୁ ଲକ୍ଷ୍ୟକରି) ସେ କିଏ ଯାଉଚନ୍ତ ? ଶାମବାବୁ ନା ? (ଶାମ ଆସିଲେ)

ଶାମ—କିଏ କାହ୍ନୁ ?

କାହ୍ନୁ—ତମେ ଏଇ ଘରଟାରେ ରହୁଚତ ?

ଶାମ—ହଁ ।

(ଦୁହେଁ ଘର ଭିତରକୁ ଆସିଲେ)

କାହ୍ନୁ—ଘରେ କ'ଣ ଆଉ କେହି ନାହାନ୍ତ ? ମୁଁ ଡାକି ଡାକି ଥକିଲିଣି···କେହି ଶୁଣୁ ନାହାନ୍ତ···ତମେ ଏଣେ କୁଆଡ଼େ ଯାଇଥିଲ—

ଶାମ—ମୁଁ ? ନା···ମୁଁ ବାହାରିଥିଲି ଗୋଟାଏ କାମରେ

କାହ୍ନୁ—କାମରେ ବାହାରିଥିଲ ? ମୁଁ ଭାବିଲି ସକାଳୁ କୁଆଡ଼େ ଯାଇଥିଲ—ଫେରୁଚ ?

ଶାମ—ଏଁ···ହଁ, ବାହାରିଥିଲି ଗୋଟାଏ କାମରେ—

କାହ୍ନୁ—ମୁଁ ସେଇ କାମର କଥା କହୁଚି ମ ? ଆମ ଗାଁରେ ତମ ଝିଅର ବାହାଘର ପ୍ରସ୍ତାବ ତମେ ପକେଇ ନ ଥିଲ ?

ଶାମ—ବାହାଘର ଏଠି କରିବେ ନାହିଁ ବୋଲି କ'ଣ ସେମାନେ ନାହିଁ କରି ପଠେଇଚନ୍ତି···

କାହ୍ନୁ—ଆହା···ଏ ଅମଙ୍ଗଳ କଥାଟା କାହିଁକି ମୁହଁରେ ଆଣୁଚ ହେ ଶାମବାବୁ । ସେମାନେ ରାଜି ହେଇଛନ୍ତି ।

ଶାମ—ରାଜି···ହେଇଛନ୍ତି ?

କାହ୍ନୁ—ଜାଣିଥିବ ତ—ଚରଣ ଦାସ, ଟିକିଏ ଆଣ୍ଟୁଆ ଲୋକ । ବି ପଇସା ହାତରେ ଅଛି....ପୁଅଟା ଯୋଗ୍ୟ—ଆଣ୍ଟ ନ ହବ କାହିଁକି ? ହେଲେ ତମ ଭଉଣୀଙ୍କଠୁଁ ତମ ଝିଅଟିର ସବୁ ହାଲ ଶୁଣି ଦାସେ ହଁ ଭରିଚନ୍ତି ।

ଶାମ—ଓ ।

କାହ୍ନୁ—କହୋ, ଖାଲି କ'ଣ ଦବା ନବାଟାଇ ସବୁ ? ଝିଅ ଯଦି ଗୁଣର ହେଇଥିବ··କାମର ହେଇଥିବ··ତାର କ'ଣ କିଛି ମୂଲ୍ୟ ନାହିଁ ? ଏଇ ତ୍ରୟୋଦଶୀ ଦିନ ଦାସେ ବୋହୂ ଦେଖିବାକୁ କଟକ ଆସିବେ···ତମ ଭଉଣୀ ବି ଆସିବେ । ସେଇ ଖବରଟା ଦବାକୁ ଆସିଥିଲି । ତମ ଭାଗ୍ୟ, ବୁଝିଲ ଶାମବାବୁ ।

ଶାମ—ଚରଣ ଦାସ, ରାଜି ହେଇଚନ୍ତି ?

କାହ୍ନୁ—କାହିଁକ ହୋ—ଗଜ ନ ହେବେ କାହିଁକ ? ଆଜକାଲ ଯାହା ବେଳ କାଳ ହେଲାଣି....ଇମିତି ଭଲ ଚରିତ-ଭଲ ରୂପ-ଭଲ ଗୁଣରେ ଝିଅଟିଏ ପାଇବା କ'ଣ ସହଜ କଥା ?···ଏଇ ପରା ତମର ଏଇ ଛକ ଉପରେ ଗୁଂ ଦୋକାନରୁ ଶୁଣି ଆସିଲି···

ଶାମ—କ'ଣ ଶୁଣିଲି କାହ୍ନୁ ?

କାହ୍ନୁ—ତମର ଏଇ ସାଇରେ କାହା ଘର କଥା ପରା ? ତମେ ଶୁଣିଛ ?···ବାପ ଶୋଇଛି, ଅଠର ଉଣେଇଶି ବର୍ଷର ଝିଅ, ବାପକୁ ଘରେ ଶିକୁଳି ଲଗେଇ ଦେଇ କାହା ସଙ୍ଗରେ ଗୋଟାଏ ପଳେଇ ଯାଇ ଖଡ଼ଗପୁରରେ ହାଜର । ସେଇଠି କୁଆଡ଼େ ପୋଲିସ ତାଙ୍କୁ ଧରିଛି···ବେଳ କାଳ ଆସି ଏମିତି ପଡ଼ିଲାଣି ଯେ··! ଶାମ ଭାଇ, ତମ ଦେହ ଭଲ ନାହିଁକି ? ଏମିତି ଶୁଖିଲାଟା ଦିଶୁଚ ?

ଶାମ—କାହା କଥା ତମେ କହୁଚ କାହ୍ନୁ ? କାହା ଝିଅ ସେ ?

କାହ୍ନୁ—ମୁଁ ସେ ନାଁ ଗାଁ ଶୁଣି ନାଇଁକି, ଶୁଣିବାକୁ ରହିଁନ ? ପଞ୍ଚାଏ ଟୋକା ହସି ହସି କଥାବାର୍ତ୍ତା ହଉଥିଲେ··ମୋ କାନରେ ଯାହା ବାଜିଗଲା ! ହସିବେ ନାହିଁ ବା କାହିଁକି ?··· ମୋ ଝିଅ କଥା ଶୁଣିଲେ ତମେ ହସିବ ନାହିଁ ନା ତମ ଝିଅ କଥା ଶୁଣିଲେ ମୁଁ ହସିବି ନାହିଁ ।···ସତରେ ଶାମ ଭାଇ ମୋ ଝିଅ ଯଦି ସେ ହେଇଥାନ୍ତା—ମୁଁ କହନ୍ତି—ସେ ଯାଇଚି ତ ସିଆଡ଼େ ଯାଉ । ଘରକୁ ଫେରିଲେ ମୁଁ ତା' ଗଳାରେ ଛୁରି ଦେଇ ନିଜେ ଛୁରି ମାରି ହେଇ ମରନ୍ତି ।

ଶାମ—କାହ୍ନୁ···!

କାହ୍ନୁ—ତମେ କ'ଣ ଜାଣିନ ଶାମବାବୁ···ଏ ଯୁଗର ଗତି ଯୁଆଡ଼କୁ ଯାଉନା କାହିଁକି···ଆମ କୁଳ ଆମ ଧର୍ମରେ ଆମେ ମୋଟେ ଏ କଥା ସହି ପାରିବା ନାହିଁ ! ଅସତୀ ବ୍ୟଭିଚାରିଣୀ କଥାଟା ଶୁଣିଲେ ଆମ ରକ୍ତ ତାତି ଉଠିବ ।···ଗୁଡ଼ା ସେ ପର ଚର୍ଚ୍ଚାରୁ ଆମକୁ କ'ଣ ମିଳିବ ?···ମୋର ମଠରେ ବେଳ ହେଇ ଯାଉଚି ମୁଁ ବାହାରିଲି, ପଅର ଦିନଠୁଁ କଟକ ଆସିଲଣି-କାଲି ଦିନଟା ସାରା କଚେରୀରେ ଗଲା···। ବାରମ୍ବାର କରି ତମ ଭଉଣୀ କହୁଥିଲେ—ଖବରଟା ଦେଇଗଲି । ଯାହା ମୁଁ କହୁଚି···ଦାସେ କେବଳ ତମ ଝିଅଟିର ଗୁଣ ଶୁଣି ଏଥିରେ ରାଜି ହେଇଚନ୍ତି ! ଜାତକ ବି ଭଲ ଶୁଝିଚି ।···ତମେ ଭଗବାନଙ୍କୁ ଡାକ··· କେମିତି ଏ କମିଟା ଉଠିଯାଉ । ହଉ, ମୁଁ ତା ହେଲେ ଯାଉଚି ଶାମବାବୁ—ଦଣ୍ଡବତ !

(କାହ୍ନୁ ଚାଲିଗଲେ । କ୍ଷୋଭ ଓ ଦୁଃଖରେ ମ୍ରିୟମାଣ ହେଇ ଠିଆ ହେଇ ଥାନ୍ତି ଶାମ । ଟିକିଏ ପରେ ହାତରେ ଗୋଟାଏ ପତ୍ରର ଠୋଲାରେ ଜଳଖିଆ ଧରି ରାଜୁ ଆସିଲା)

ରାଜୁ—ଏ କ'ଣ ମଉସା ! ଆପଣ ଏଠି ଇମିତି ଠିଆହେଇଚନ୍ତି କାହିଁକି ? ଚାଲନ୍ତୁ ଭିତରକୁ ଚାଲନ୍ତୁ ।

ଶାମ—ରାଜୁ ! (ରାଗରେ ଆଖି ଦିଟା ଜଳି ଉଠିଲା)

ରାଜୁ—କ'ଣ ହେଲା ମଉସା ? ଆସନ୍ତୁ

ଶାମ—ତୁତ ସବୁ କଥା ଶୁଣିଲୁକି ରାଜୁ···ସବୁ ଦେଖିଲୁ—ତାକୁ କି ଦଣ୍ଡ ତୁ ଦବୁ କହ !

ରାଜୁ—ଆପଣ କ'ଣ ପିଲା ହେଇ ଯାଉଚନ୍ତି ମଉସା—ଆସନ୍ତୁ— ଆସନ୍ତୁ ।

ଶାମ—ତୁ କହ ରାଜୁ, କ ଦଣ୍ଡ ତାକୁ ତୁ ଦବୁ···କ ଶାସ୍ତି ସେ ପାଇବ ?

ରାଜୁ—ଆପଣ କ'ଣ ପାଗଳ ହେଲେ ମଉସା । କ'ଣ ଏ ସବୁ କହୁଚନ୍ତି ?···ଦେଖୁଚନ୍ତି ପିଲାଟା ଦି' ତିନ ଦିନ ହେଲା ଉପାସ ଭୋକରେ ପଡ଼ିଚି—

ଶାମ—ସେ ଖାଇ ନାହିଁ···ଭୋକ ଉପାସରେ ପଡ଼ିଚି ବୋଲି ତୁ ତା ପାଇଁ ଜଳଖିଆ ଆଣି ଆସିଚୁ···ଆଦର କରି ଖାଇବାକୁ ଦବୁ ···ସେ ଖାଇବ !

(ରାଜୁ ହାତରୁ ଠୋଲାଟି ଛଡେଇ ନେଇ ଫୋପାଡ଼ି ଦେଲେ)

ରାଜୁ—ମଉସା ଆପଣ ଏ କ'ଣ କଲେ ?

ଶାମ—ମୋ ମୁହଁରେ ସେ କାଳି ଲଗେଇଚି । ମୋ କୁଳରେ ସେ କଳଙ୍କ ଲଗେଇଚି···ତାର ଉପଯୁକ୍ତ ଶାସ୍ତି ମୁଁ ତାକୁ ଦେବି ।

(ଭିତରକୁ ଯାଉଥିଲେ)

ରାଜୁ—(ବାଧା ଦେଇ) ମଉସା । ଆପଣ ପାଗଳ ହେଲେ ନା କ'ଣ ? ଲୋକେ ଶୁଣିଲେ କ'ଣ କହିବେ ।

ଶାମ—ଲୋକେ ଶୁଣିବାକୁ ଆଉ କିଛି ବାକି ନାହିଁ ରାଜୁ—ସବୁ କଥା ସରି ଯାଇଚି । ତୁ ଯା ରାଜୁ—ତୋ ହାତ ଧରି କହୁଚି, ତୁ ଫେରି ଯା । ବିପଦରେ ପଡ଼ିଥିଲି ବୋଲି ମୋ ଦୁଆରେ ଠିଆ ହେଇଥିଲୁ—ଆଉ ତ ମୋର କିଛି ବିପଦ ନାହିଁ । ତିନି ପୁରୁଷର ଖାନଦାମି ଘର—ସବୁ ଯାଇଥିଲା—ଥିଲା ଖାଲି ଟିକିଏ ମାନ·· ଟିକିଏ ଇଜ୍ଜତ । ଆଜି ସେତକ ଯେତେବେଳେ ଗଲାଣି···ଆଉ ମୋର ରହିଲା କ'ଣ କହ ? ମୋର ଏଇ ହାତରେ ମୁଁ ଆଜି ସବୁ ଶେଷ କରି ଦେବି ।

(ଗୋଟାଏ ଅସ୍ୱାଭାବିକ ଉତ୍ତେଜନାରେ ଭିତରକୁ ଆଗେଇ ଗଲା ବେଳେ ଦୁ' ହାତରେ ଦୁ' କପ ଚା' ଧରି ଆସିଲା ଗୀତା । ବାପାଙ୍କର ଏ ଭଗ୍ନମୂର୍ତ୍ତି ଦେଖି ସେ ଭୟରେ କଳା କାଠ ପଡ଼ି ଗଲା ଯେମିତି)

ଶାମ—(ରାଗରେ) ଗୀତା ! (ହୁଏତ କିଛି ଗୋଟାଏ ଦୁର୍ଘଟଣା ଘଟିଥାନ୍ତା । କିନ୍ତୁ ବାଧା ଦେଲା ରାଜୁ)

ରାଜୁ—ମଉସା—ଏ କ'ଣ କରୁଛନ୍ତି ?

ଶାମ—ମୋ ରକ୍ତରେ ନିଆଁ ଲଗେଇ ଦେଇ ଯାଇଚି କାହ୍ନୁ ! ସେ ନିଆଁରେ ଜଳି ମୁଁ ମରିବା ଆଗରୁ ତା ଜୀବନ ମୁଁ ଆଜି ନେବି ।

ରାଜୁ—ମଉସା !

ଶାମ—ମୁଁ କହୁଚି ପରା ରାଜୁ...ତୁ ଚାଲିଯା ଏଠୁ !

ରାଜୁ—ଯେଉଁ କ'ଣ ହଉଚି ମଉସା...ରାସ୍ତାରେ ହୁଏତ ଲୋକ ଜମା ହେଇ ଗିଲେଣି ।

ଶାମ—ରାଜୁ !

ରାଜୁ—ଗୀତାର ଅବସ୍ଥା ଦେଖୁଚନ୍ତି ମଉସା !

(ଗୀତା ଯେମିତି ସେଇଠି ଠିଆ ହେଇଥାଏ ! ସାରା ଦେହ ତା'ର ଭୟରେ ଥରୁଥାଏ)

ଶାମ—(ରାଜୁକୁ ଠେଲି ଦେଇ) ତୁ ଚାଲିଯା ଏଠୁ !

ରାଜୁ—ମୁଁ ଯିବା ପୂର୍ବରୁ ଆପଣ ଏଠୁ ଚାଲିଯାନ୍ତୁ ।

ଶାମ—କ'ଣ କହିଲୁ ରାଜୁ ? ମୁଁ ଏଠୁ ଚାଲିଯିବି !

ରାଜୁ—ହଁ, ଆପଣ ଏଠୁ ଚାଲିଯାନ୍ତୁ !

ଶାମ—ରାଜୁ !

ରାଜୁ—ମୁଁ କିଛି ଶୁଣିବି ନାହିଁ । ଆପଣ ଏଠୁ ଚାଲିଯାନ୍ତୁ ?

(ଜୋର କରି ବାହାରକୁ ନେଇ ଯାଇ କବାଟ ବନ୍ଦ କରି ଦେଲେ)

ଗୀତା—ରାଜୁ ଭାଇ, ରାଜୁ ଭାଇ !

ଶ୍ୟାମ—(ବାହାରୁ) ରାଜୁ—କବାଟ ଖୋଲ ରାଜୁ···ନଇଲେ ଏ କବାଟ ମୁଁ ଭାଙ୍ଗି ଦେବ ! ରାଜୁ···

ଗୀତା—ରାଜୁ ଭାଇ !

ରାଜୁ—ତୁ ଟିକଏ ଧୈର୍ଯ୍ୟ ଧର ଗୀତା—ସେ ବର୍ତ୍ତମାନ ନିଜ ଆୟତ୍ତରେ ନାହାନ୍ତି···ତୁ ଟିକଏ ଅପେକ୍ଷା କର—

ଶ୍ୟାମ—(ବାହାରୁ) ରାଜୁ···କବାଟ ଖୋଲ ରାଜୁ ! ଗୀତା···

ଗୀତା—ଏଇ···ସେ ମତେ ଡାକୁଚନ୍ତି ରାଜୁ ଭାଇ···କବାଟ ଖୋଲି ଦିଅ ! (ଆଗେଇ ଯାଉଥିଲା)

ରାଜୁ—(ବାଧା ଦେଇ) ଗୀତା-ମୋ କଥା ତୁ ଶୁଣ ! ଟିକଏ ଅପେକ୍ଷା କର !

ଗୀତା—ଆଉ କ'ଣ ଅପେକ୍ଷା କରିବି ? କାହିଁକି ଅପେକ୍ଷା କରିବି ? ତାଙ୍କର କଥା ହଉ ! ମତେ ସେ ଜନ୍ମ ଦେଇଚନ୍ତି···ଆଜି ତାଙ୍କରି ହାତରେ ସବୁ ଶେଷ କରି ଦିଅନ୍ତୁ ।

ରାଜୁ—ଗୀତା !

ଗୀତା—ହଁ ରାଜୁଭାଇ, କବାଟ ଖୋଲିଦିଅ—ସେ ଆସନ୍ତୁ······

( ନିଜେ କବାଟ ଖୋଲି ବାହାରକୁ ଯାଇ ଯାହା ଦେଖିଲା ସେଥିରେ ସେ ଚିତ୍କାର କରି ଉଠିଲା । ) ବାପା !···ରାଜୁଭାଇ !

ରାଜୁ—କ'ଣ ହେଲା ଗୀତା ।

ଗୀତା—ବାପା ବେହୋସ ହୋଇ ପଡ଼ିଛନ୍ତି ।

ରାଜୁ—ଏଁ (ଭିତରକୁ ଯାଇ) ମଉସା ! ଗୀତା ! ତୁ ଟିକେ ପାଣି ଆଣ ।

( ସଙ୍ଗେ ସଙ୍ଗେ ଗୀତା ପାଣି ଆଣି ଦେଲା । ସେଇ ଅବସ୍ଥାରେ ଦୁହେଁ ମିଶି ତାଙ୍କୁ ଖଟଉପରକୁ ନେଇ ଆସିଲେ । ଟିକଏ ପରେ ଜ୍ଞାନ ଫେରି ଆସିଲା ।

ଶ୍ୟାମ—ରାଜୁ !!!

ରାଜୁ—ଆପଣ ଟିକିଏ ଶୋଇ ପଡ଼ନ୍ତୁ ମଉସା !

ଶ୍ୟାମ—ଶୋଇବି । କାହିଁକି ? କ'ଣ ମୋର ହୋଇଛି ?

( ଉଠିବାକୁ ଚେଷ୍ଟା କରୁଥିଲେ )

ରାଜୁ—(ବାଧାଦେଇ) ଯେ୍ନ କ'ଣ ? ଉଠୁଛନ୍ତି କାହିଁକି ? କହିଲି ପରା, ଶୋଇ ପଡ଼ନ୍ତୁ । ଟିକିଏ ବିଶ୍ରାମ ନିଅନ୍ତୁ ।

ଶ୍ୟାମ—ବିଶ୍ରାମର କିଛି ଦରକାର ନାହିଁ ରାଜୁ ! ମୋ ଦେହ ଭଲ ଅଛି । ସେତେବେଳେ ଯେମିତି ଗୋଟାଏ ରକ୍ତର ସୁଅ ମୋ ମୁଣ୍ଡ ଉପରକୁ ଛୁଟି ଗଲା ! ତା' ପରେ କଣ ହେଲା ମୁଁ ଜାଣିନି ଏଇନେ ତ ମୁଁ ସମ୍ପୂର୍ଣ୍ଣ ଭଲ ଅଛି ।

ରାଜୁ—ଆପଣ ବୁଝି ପାରୁ ନାହାନ୍ତି ମଉସା ! ଆପଣ ଭାରି ଦୁର୍ବଳ ହୋଇ ପଡ଼ିଛନ୍ତି ।

ଶ୍ୟାମ—ରାଜୁ ! ଯେବେ ସେତେବେଳେ ମୁଁ ଦୁଃଖ ହତାଶାରେ ବୁଡ଼ି ରହିଥିଲି, ତୁ ମତେ ରାହା ଖୋଜି ଦେଇଥିଲୁ·····ତୋରି ଦୟାରୁ ବାପ ଝିଅ ଆମେ ଆଜି ଦି ବେଳା ଦି ମୁଠା ଖାଇବାକୁ ପାଉଛୁ ! ମୋର ଏ ଦୁଃଖରେ ରାତି ନପାହୁଣୁ ତୁ ଆସି ମୋ ଦୁଆରେ ଠିଆ ହୋଇଥିଲୁ·····ଆଉ, ତତେ ଆଜି ମୁଁ ଏ ଘରୁ ତଡ଼ିଦେଲି·····

( ଲୁହ ଲୁଚି ରଖିବାକୁ ଚେଷ୍ଟା କରୁଥିଲେ, ଗୀତା ଲୁହ ପୋଛୁ ପୋଛୁ ଭିତରକୁ ଚାଲିଗଲା । )

ରାଜୁ—ଆପଣ ମୋତେ ବ୍ୟସ୍ତ କରନ୍ତୁନି ମଉସା ! କିଏ କହିଲା ଆପଣ ମତେ ଘରୁ ତଡ଼ିଦେଲେ ? ଆପଣଙ୍କ କଥାରେ ମୁଁ ଯଦି ଅପମାନ ବୋଧ କରିଥାନ୍ତି, ତାହେଲେ ମୁଁ ତ ସେଇ ମୁହୂର୍ତ୍ତରେ ଏଠୁ ଚାଲି ଯାଇଥାନ୍ତି·····ବରଂ ମୁଁ··

ଶାମ—ତୁ ମତେ ବଞ୍ଚେଇ ଦେଇଚୁ ରାଜୁ ! ରକ୍ତରେ ମୋର ସେତେବେଳେ ନିଆଁ ଲାଗିଥିଲା··· ତୁ ନ ଥିଲେ କ'ଣ ଯେ ମୁଁ କରି ବସିଥାନ୍ତି, ଗୀତାର ଅବସ୍ଥା କ'ଣ ହୋଇଥାନ୍ତା···

ରାଜୁ—ଯାହା ହବାର ଥିଲା ହୋଇ ଯାଇଚି ମଉସା ! ଆପଣ ଆଉ ଏମିତି ଅଧିର ହୁଅନ୍ତୁନି । ଗୀତାର ଅବସ୍ଥା ଦେଖୁଚନ୍ତିତ ? ସେ ହୁଏତ ସେ ଘରେ ବସି କାନ୍ଦୁଚି ।

ଶାମ—ନ କାନ୍ଦି ଆଉ ସେ କ'ଣ କରିବ କହ ! ହତଭାଗୀ ଯୋଉ କାର୍ତ୍ତି କରି ବସିଚି·········

ରାଜୁ—ପୁଣି ସେଇକଥା କହିଲେ ! ସେ ହତଭାଗିନୀ ହବ କାହିଁକି ? କ'ଣ ସେ କରିଚି ? ରକ୍ତ ମାଂସରେ ଗଢ଼ା ମଣିଷ ସେ······. ମଣିଷ ଜୀବନର ସାଧାରଣ ଭୁଲଭ୍ରାନ୍ତି, ତାକୁ ପଦେ ପଦେ ଜଗି ବସିଚି ! ନିଜ ଇଚ୍ଛାରେ ହଉ ବା ଅନିଚ୍ଛାରେ ହଉ, ଯଦି ଏ ଭୁଲ ସେ କରିଥାଏ, ତାକୁ ସୁଧାରି ନବାର ଅଧିକାର କ'ଣ ତା'ର ନାହିଁ ଯେ ············

ଶାମ—ମୁଁ ଜାଣେ ରାଜୁ ! ତୁ ମତେ ସାନ୍ତ୍ୱନା ଦବପାଇଁ ଏକଥା କହୁଚୁ । ମଣିଷ ଜୀବନରେ ତିଳ ପ୍ରମାଣ ଭୁଲ, ଦିନେ ଯେ ତାଳ ରୂପନେଇ ଠିଆହୁଏ ଏକଥା ତୁ ଜାଣୁ, ଦୁନିଆଁ ବି ଜାଣେ, ତଥାପି ତୋ' କଥା ଶୁଣି—ମୁଁ ଆଜି ସବୁ ଦୁଃଖ ସବୁ ଆଶଙ୍କା ମୋ ମନରୁ ପୋଛୁ । ଦେଉଛି ତୁ ଥିବା ଯାଏ ମୋର ଆଉ କୌଣସି ଦୁଶ୍ଚିନ୍ତା ରହିବ ନାହିଁ ବାପ ! ମୁଁ ନିଶ୍ଚିନ୍ତ···ହଁ ମୁଁ ନିଶ୍ଚିନ୍ତ ! (ଟିକିଏ ପରେ) । ହଁ, ତୋର ଅଫିସ ବେଳ ହୋଇ ଗଲାଣି ବୋଧ ହୁଏ ?

ରାଜୁ—ହଁ, ଅଫିସ ବେଳତ ହୋଇ ଗଲାଣି । ଆପଣ ଆଜି ଅଫିସ ଯିବେ ନାହିଁ ?

ଶାମ—ମୁଁ—ତୁ କହ ମୁଁ ଅଫିସ ଯିବକି ନାହିଁ ? ଅଫିସ ଯାଇ ମୁଁ କାମକରି ପାରିବ ତ ?

ରାଜୁ—ନା—ଥାଉ ! ଆପଣ ଆଜ ଅଫିସ ଯିବା ଦରକାର ନାହିଁ …ଅଫିସ କଥା ମୁଁ ବୁଝିବି, କିନ୍ତୁ ଏଥର ଆପଣ ପାଣି ଟିକିଏ ବି ପିଇନାହାନ୍ତି (ଡ଼ାକିଲା) ଗୀତା ! ଗୀତା !

ଶାମ—ତୋର ଅଫିସ ବେଳ ହୋଇ ଯାଉଛି ରାଜୁ…ତୁ ଯା…ତୁ କ'ଣ ଭାବୁଚୁ ଆମେ ନ ଖାଇ ରହି ପାରିବୁ !…ମଣିଷ ଜୀବନ ପରି—( ଗୀତ ଆସିଲା )

ରାଜୁ—କାଲିଠୁଁ ପରି ତମେ କେହି କିଛି ଖାଇନ ! ଏମିତି ଦୁର୍ଭାଗ୍ୟ ଯେ ସେତେବେଳେ ଗୁଣ୍ଡେ ଜଳଖିଆ ଟିକେ ଖାଇ ହେଲା ନାହିଁ ।

ଶାମ—ରାଜୁ ! ତୁ ବ୍ୟସ୍ତ ହୋ'ନା ବାପ ! ଗୀତା ଏବେନେ ରନ୍ଧା ବଢ଼ା କରିବ ! କହିଲ ପରି…ନ ଖାଇ ଆମେ କେଉଁଦିନ ରହିବୁ ?

ରାଜୁ—ତା' ହେଲେ ତୁ ଯା—ଗୀତା—ଯେତେ ଚଞ୍ଚଳ ପାରୁ ରନ୍ଧା ବଢ଼ା ସାରି, ମଉସାଙ୍କୁ ଖାଇବାକୁ ଦେଇ, ତୁ ନିଜେ ଖାଇବୁ ! ବୁଝିଲୁ ? ( ଗୀତାସମ୍ମତି ଜଣାଇଲା ) ମୁଁ ତା' ହେଲେ…

ଶାମ—ହଁ, ତୁ ଯା ବାପ · ଯା—( ରାଜୁର ପ୍ରସ୍ଥାନ )

ଗୀତା—ବାପା !

ଶାମ—କଣ ? ସଉଦାପତ୍ର ପାଇଁ ବଜାରକୁ ଯିବ ?

ଗୀତା—ନା, ସଉଦା ଆଣିବା ଦର୍କାର ନାହିଁ, ତମେତ ସେତେବେଳେ ଗୁଣ୍ଡେ ଖାଇ ପାରିଲ ନାହିଁ—ଏବେନେ ଟିକେ ଗୁଣ୍ଡେ କରିଦେବି ?

ଶାମ—ଗୁଣ୍ଡ'……

କାହ୍ନୁ—(ବାହାରୁ) ଶାମ ବାବୁ ଘରେ ଅଛ ? (କାହ୍ନୁ ସ୍ୱର ବାରି ପାରି ଶାମ ଚମକି ଉଠିଲେ )

ଶାମ—(ନମ୍ର ସ୍ୱରରେ) ତୁ କହିଦେ ଗୀତା···ବାପା ଘରେ ନାହାନ୍ତି !

ଗୀତା—କାହିଁ କି ବାପା ? ସେ କିଏ ?

କାହ୍ନୁ—ଶାମବାବୁ ଘରେ ଅଛନ୍ତି ? (କହୁ କହୁ କାହ୍ନୁ ପଶି ଆସିଲେ । ଗୀତା ସଙ୍ଗେ ସଙ୍ଗେ ଭିତରକୁ ଚାଲିଗଲା । ଶାମ ଦରଜା ବନ୍ଦ କରି ଦେଲେ)

କାହ୍ନୁ—ଭଲ କରିଚ ଶାମବାବୁ···ଦରଜାଟା ବନ୍ଦ କରି ଦେଇ ଖୁବ୍ ଭଲ କରିଚ । ଯେତେ ଯାହା ହେଲେ ବି ସେ ମାଇକିନିଆ ଝିଅ···ଆମ ଭିତର କଥାବାର୍ତ୍ତା ଗୁଡ଼ାକ ତା' କାନରେ ପଡ଼ିବା ଠିକ୍ ନୁହେଁ ।

ଶାମ—କ'ଣ ହେଇଚି କାହ୍ନୁ ?

କାହ୍ନୁ—କ'ଣ ହେଇଚି ଜାଣିନ ତ ପାଟି ଏମିତି ଖନି ବାଜି ଯାଉଚି କାହିଁ କି ? ··କଉ ! ମୁଁ କୋଉ ଅପର ଲୋକ ହେଇଚି ନା ବିଦେଶୀ ଲୋକ ହେଇଚି ଯେ, ତମେ ମୋ ଆଖିରେ ଭେଳିକି ଲଗେଇ ମତେ ଠକି ଦବାକୁ ବସିଚ ? ଭାଗ୍ୟକୁ ମୁଁ ସିନା ମଝିରେ ଫେଲ୍ ହେଇ ରହିଲି ବୋଲି···ନ ହେଲେ ତ ପାଠ ଛୁଟିଥିଲା···

ଶାମ— କାହ୍ନୁ !

କାହ୍ନୁ—କ'ଣ ଆଉ କାହ୍ନୁ କାହ୍ନୁ ହଉଚ ହେ ! କାହ୍ନୁକୁ ତମେ ଆଉ ସଂସାରରେ ରଖିଚ !—କାଲି ଗୁଡ଼ା ପଅରି ଦିନ ହସ୍ପୋଦର୍ଶୀ —ମୋ' କଥାରେ ସେମାନେ ଯଦି ଆସି ଯାଇଥାନ୍ତେ—ମୁଁ ତା' ହେଲେ ମଣିଷ ଭିତରେ ଗଣା ହେଇଥାନ୍ତି !!··· କଟକ ସହର ସାରା ହୁଲ ହୁଲ ପଡ଼ିଲାଣି·—ଖବର କାଗଜରେ ଲେଖା ବାହାରି ଗଲାଣି···ଆଉ ମୁଁ ତମ ନିଜର ଲୋକ ବୋଲି, ମୋ

ପାଖରେ ତମେ ସୁନା ପିଲାଟି ପରି ଭଲେଇ ହୋଇ ବସିଚ !
ନ ହେଲା—ମତେ ତମେ ପର ବୋଲି ଭାବିଲ···ଚରଣ ଦାସଙ୍କୁ
ଠକିଲ···? ତମ ଭଉଣୀ, ତମ ଭଉଣୀ ପରା ଏ ସମ୍ବନ୍ଧରେ
ଭଦ୍ରଲୋକ ! ତାଙ୍କୁ ବ ତମେ ଭାନୁମତୀ ଖେଳ ଦେଖେଇ ଦବାକୁ
ବସିଥିଲ ?

ଶାମ—କାହିଁକି ଏଗୁଡ଼ା ମତେ ଆଉ କହୁଚ କହିଲ କାହ୍ନୁ ?

କାହ୍ନୁ—ନାଃ ! ତମକୁ ନ କହି ଗାଁ ଲୋକଙ୍କୁ କହିବ ! କଥା ଶୁଣ !
···ହଉ ବାବୁ···ଯାହାତ ହବାର ହେଲାଣି···ମତେ ଖଣ୍ଡେ
ତମେ ଚିଠି ଲେଖିଦେଲ···ମୁଁ ଆଜି ଉପରବେଳା ମଠରରେ
ଚାଲିଯିବ !···ଆଉ ଭାବୁଚ କ'ଣ ? ଚିଠି ଖଣ୍ଡେ ଲେଖିଦିଅ···
ମୁଁ ଯାଏ ଚଞ୍ଚଳ । ଏଠିକି ଆସିଲା ବେଳେ ଦେଖିଲି ପରା···
ସେଇ ଚା' ଦୋକାନରି ଟୋକା ପଂଝାକ ଆଖି ଠାରାଠାରି ହୋଇ
ହସୁଥିଲେ ।···ଦେଲ, ମୁଁ ଯାଏ !

ଶାମ—କି ଚିଠି କାହ୍ନୁ ? କାହା ପାଖକୁ ଲେଖିବ ?

କାହ୍ନୁ—ତମ ଭଉଣୀଙ୍କ ପାଖରୁ ଖବର ନେଇ ମୁଁ ଆସିଥିଲି—
ତାଙ୍କର ପାଖକୁ ଚିଠି ଲେଖ ଯେ—ମୋ ଗୁଣମଣି ଝିଅ—

ଶାମ—(ଜୋର ଗଳାରେ) କାହ୍ନୁ !

କାହ୍ନୁ—କାହିଁକି ହୋ ! ମତେ ଏ ନାଲି ଆଖି କାହିଁକି ଦେଖାଉଚ ?
ନ ଦେଲା—ଚିଠି ତମର ଥାଉ ! ଚାରିଟା ପଇସା ଦେଇ ଖବର
କାଗଜ ଖଣ୍ଡେ ମୁଁ ଆଉ ନେଇ ପାରିବନି ? ଆରେ···ସତେ
ଯେମିତ ସ୍ତ୍ରୀଙ୍କ ଝିଅଟାକୁ, ମୁଁ ବଦନାମ କରେଇ ଦେଲି ପରା !!
(କହୁ କହୁ ଚାଲିଗଲା—ଶାମ କିମ୍ଭୂତ କିମାକାର ହୋଇ ଠିଆ ହୋଇଥାନ୍ତି
ଆସିଲା ଗୀତା)

ଗୀତା—ବାପା !

ଶାମ—କ'ଣ କହୁଚୁ ? (ଗୀତାକୁ ଚ୍ହିଁ ପାରୁ ନ ଥାନ୍ତି)

ଗୀତା—ତମ ଗାଧୁଆ ବେଳ ହେଇ ଗଲାଣି—ପାଣି ଦେବ ?

ଶାମ—ମୋର ଗୋଟାଏ କଥାର ଉତ୍ତର ତୁ ଦେଇ ପାରିବୁ ଗୀତା ? ମୋର ଦୁଃଖ ଦେଖି-ମତେ କନ୍ୟାଦାୟରୁ ଉଦ୍ଧାର କରିବା ପାଇଁ, ଯଦି ତୁ ଦୁଃସାହସ କରି ଘରୁ ଚ୍ଲି ଯାଇ ପାରିଲୁ··· ଆଜି ମୋର ଏ କଦର୍ଯ୍ୟ, ନିର୍ଲଜ୍ଜ ଜୀବନ—ଏ ହୀନ ଅବସ୍ଥା ଦେଖି, ମତେ ଏଥିରୁ ଉଦ୍ଧାର କରିବାର କିଛି ଉପାୟ କ'ଣ ତୋର ନାହିଁ ? (ଭୟରେ ଗୀତା ସେ ଘରୁ ଚ୍ଲି ଯାଉଥିଲା ।) କହିଯା ଗୀତା ! ମତେ ଏମିତି ଜାଳି ପୋଡ଼ି ମାରିବା ଅପେକ୍ଷା······

ଗୀତା—(ଭୟ ମିଶା କଣ୍ଠରେ) ବାପା !

ଶାମ—ବାପା ! କାହିଁକି ମତେ ଆଉ ବାପା ବୋଲି ଡାକୁଚୁ ?

ଗୀତା—ମୁଁ ତ କହିଚି ବାପା ! ତମର ଭଲ ପାଇଁ ତମେ ଯାହା ଚ୍ହିଁବ···ମତେ ଯୋଉ ଦଣ୍ଡ ଦବ ମୁଁ ମାନି ନେବି !·· ମୁଁ ଆଉ ତମର ଝିଅ ହେଇ ରହିବିନି···ମୁଁ ତମର ଆଶ୍ରୟ ପ୍ରାର୍ଥୀ ! ଆଶ୍ରୟ ଦେଲେ ରହିବି—ନାହିଁ ତ······

ଶାମ—(ଗୋଟାଏ ଆବେଗରେ ଗୀତା ଆଡ଼କୁ ଫେରିଚ୍ହିଁ )ଗୀତା ! ଗୀତା··· କାଲିଠୁଁ ତୋ'ର ଏ ମୁହଁକୁ ମୁଁ ଭଲ କରି ଥରେ ଚ୍ହିଁ ନ ଥିଲି ମା ! ଏ ସରଳ-ନିଷ୍ପାପ ମୁହଁ···କାହିଁକି ସେ ଭଗବାନ !···ନା-ନା-ନା ତୁ କିଛି ଦୋଷ କରିନୁ ! ତୁ ନିଷ୍ପାପ ··ନିର୍ଦ୍ଦୋଷ···ତୋର କିଛି ଦୋଷ ନାହିଁ ମା-ତୋ'ର କିଛି ଦୋଷ ନାହିଁ ।

ଗୀତା—ବାପା······(କାନ୍ଦୁଥାଏ)

ଶାମ—ନାଇଁ ମା, ତୋ'ର କିଛି ଦୋଷ ନାହିଁ···ତୁ ନିର୍ଦ୍ଦୋଷ !!



## ୨ୟ ଦୃଶ୍ୟ

(ରାସ୍ତା । ଦୁଇଜଣ ସ୍ଥାନୀୟ ଯୁବକ ଆସିଲେ—ବିଶୁ ଓ ମନୁ )

ମନୁ—ନା—ମୋ ମନ ମୋଟେ ମାନୁନ !

ବିଶୁ—ମାନୁନ ?

ମନୁ—ନା—ଏ ଘଟଣାରେ ଗୀତାକୁ କେହି ଦୋଷ ଦେଇ ପାରିବ ନାହିଁ ।

ବିଶୁ—ସତେ ?

ମନୁ—ତୁ ଟିକଏ ଭଲ କରି ଭାବିଦେଖ···ଏଥିରେ ଗୀତାର ଟିକେ ବି ଦୋଷ ନାହିଁ ।

ବିଶୁ—ଗୀତାର ତ ଦୋଷ ନାହିଁ !! ଆଉ ଦୋଷ କରିଥିଲା ସୀତା ?

ମନୁ—ସୀତା ? କୋଉ ସୀତା ? ସେ ପୁଣି କିଏ ?

ବିଶୁ—ଇଏ ଜାଣି ଶୁଣି ରାତି ଅଧରେ ଗୋଟାଏ ଲୋକ ସାଙ୍ଗରେ ଘରୁ ପଳେଇଲା, ଦୋଷ ହେଲା ନ, ଆଉ ସୀତାକୁ ଜୋର କରି ଜଣେ ନେଇଗଲା ବୋଲି ସେ ହେଲା ଦୋଷୀ ! ଆରେ ବାଃ ! ବେଶ୍ ଭଲ ବିଚାର ତୁ କରୁଚୁ ?

ମନୁ—ତୁ କୋଉ ସୀତା କଥା କହୁଚୁ ବିଶୁଭାଇ ? ଆମ ଏ ଯାଦବ ଭାଇ ସ୍ତ୍ରୀ···?

ବିଶୁ—କେମିତିକା ମୂର୍ଖଙ୍କ ଭଳି କଥା କହୁଚୁ ? ଏଇ ଦଶହରାକୁ ପରା ଆମ ଛକ ଉପରେ ମୂର୍ତ୍ତି ବନି ଥିଲା—ସୀତାଙ୍କ ଅଗ୍ନି—ପରୀକ୍ଷା !

ମନୁ—ଓ ! (ହସିଉଠି) ତୁ ଏବେ ସେ ସୀତାଙ୍କ କଥା କହୁଚୁ ?

ବଣ୍ଟୁ—ହସିଲୁ କାହିଁକ ?

ମନୁ—ନା—ଭାଇ ମୁଁ ମାନିଗଲି ! ତୋ ମୁହଁରୁ ଯେତେବେଳେ ପୁରାଣ ଶୁଣା ଗଲାଣି···ମୋ' ଭୁଲ ମୁଁ ମାନିଲି । ଗୀତା ଦୋଷୀ ।

ବଣ୍ଟୁ—ଥଟ୍ଟା କରୁଚୁ ?

ମନୁ—ଥଟ୍ଟା କରିବ ନାହିଁ ? ସେ ତା'ର ଲୋକ ଆଣିଲା···ଯାହା କଲା—ସେଥିରେ ଆମର କ'ଣ ଅଛି । ତା'.କଥା ବିଗ୍ଭର କରିବାକୁ ଆମେ କିଏ ?

ବଣ୍ଟୁ—ଠିକ୍ କଥା । ଆମର କଣ କିଛି କାମ ନାହିଁ ଯେ, ଆମେ ତା କଥା ବସି ବିଗ୍ଭର କରିବୁ ?···ଆମ ଦେଖିଲା କାମ ଆମେ କରିବୁ, ତା' କଥା ବିଗ୍ଭର କରିବ ଅଦାଲତ—ନାହିଁତ ଭଗବାନ ।

ମନୁ—ପୁଣି ସେଇ ଭଗବାନ । ତୋ' ମୁହଁରେ କ'ଣ ଆଜ ଶାସ୍ତ୍ର ପୁରାଣ, ଭଗବାନ ଛଡ଼ା ଆଉ କିଛି କଥା ନାହିଁ ଦେଖୁଚି—

( କାହ୍ନୁକୁ ଆସୁଥିବାର ଦେଖି )

ବଣ୍ଟୁ—ଏଇ ଆସୁଚି ।

ମନୁ—ଠିକ୍ ସେଇଚି ।

ବଣ୍ଟୁ—ହଁ ରେ—ସେଇ କୋଟ—ସେଇ ଛତା—ଦେଖୁନୁ ଏଇ ଆସିଲା······ ( କାହ୍ନୁ ଆସିଲ )

କାହ୍ନୁ—(ମନକୁ ମନ) ହୁଁ, ଲୋକେ ପୁଣି ଏମିତିକା ଜୁଆଗ୍ଭେର ହୋଇ ପାରନ୍ତି ?

ବଣ୍ଟୁ—କାଇଁକି ? ନ ହେବେ କାହିଁକି ?

କାହ୍ନୁ—ଏଁ ମତେ କହୁଚ ?

ବଶୁ—ହଁ । ଲୋକେ ଜୁଆଚ୍ଚୋର ନ ହେବେ କାହିଁକି ?

କାହ୍ନୁ—ନାଇଁ ବାବୁ ! ମୁଁ ତ ତମକୁ କିଛି କହୁନି !!

ମନୁ—ଓହୋ ! ଆମେ ତମ ପାଖରେ ଜୁଆଚ୍ଚୋରି କଲେ, ତମେ ଆମକୁ ଜୁଆଚ୍ଚୋର କହିବନି ?

କାହ୍ନୁ—ନାଇଁ ବାବୁ, ତମେ କାହିଁକି ଏମିତି କାମ କରିବ ଯେ

ବଶୁ—ନାଇଁ, ତମେ ଏଇନେ କହିଲ ନା—"ଲୋକେ ପୁଣି ଏମିତିକା ଜୁଆଚ୍ଚୋର ହୋଇ ପାରନ୍ତି" !

କାହ୍ନୁ—ଆମେ ସେଇକଥା କହୁଚୁ ଯେ··ଲୋକେ ଜୁଆଚ୍ଚୋର ନ ହେବେ କାହିଁକି ?

କାହ୍ନୁ—ହେବେ ?

ବଶୁ—ସବୁ ଯୁଗରେ-ସବୁକାଳରେ ଯା ହୋଇ ଆସିଚି ନା ଆଜି ନୂଆ ? ତମେ ମନେ ମନେ ହିସାବ କରି ଆସୁନ ?

କାହ୍ନୁ—ହିସାବ କରିବ ? କଣ ?

ବଶୁ—ରାମାୟଣ କଥା ମନେ ପକାଅ । ସୀତାଙ୍କୁ ଭୁଲେଇବା ପାଇଁ ରାବଣ ଯେ ଗୋଟାଏ ସୁନା ହରିଣ ପଞ୍ଚବଟୀକୁ ପଠେଇଲା··· ସେ କଥାଟା କ'ଣ ?

କାହ୍ନୁ—ହଁ । ତାକୁ ସେଇଆ କହିବାକୁ ହେବ !

ବଶୁ—ପୁଣି ସେଇ ରାମାୟଣ କଥା···ରାମଚନ୍ଦ୍ର ବାଳୀକୁ ସାମନା ସାମନି ନ ଭେଟି ଗୋଟାଏ ଜମଗଛ ଆଢ଼ୁଆଳରେ ଲୁଚି ଶର ମାରିଲେ···

କାହ୍ନୁ—ବୁଝିଲି ବାବୁ । ସବୁ ବୁଝିଲି । ହେଲେ ଏମିତିକା—କାମ କେବେ କୋଉ ଯୁଗରେ କେହି କରି ନ ଥିଲା ।

ମନୁ—କି କାମ ?

କାହ୍ନୁ—ବାପ ଝିଅର ଦୁର୍ଗୁଣକୁ ଘୋଡ଼େଇ ଦେଲେ ତାଙ୍କୁ ଅନ୍ୟ ବେକରେ ଛନ୍ଦି ଦବାକୁ ବସିଚ ?

ବିଶୁ—ତମେ କାହାକଥା କହୁଚ ?

କାହ୍ନୁ—ତମେ ଜମା ଜାଣିଥିବ କି ? ଆଜି ସକାଳୁ ପରା ମୁଁ ତମ ଘାଇରେ ସବୁଠି ଦେଖୁଚି—ସେଇକଥାର ଆଲୋଚନା ଚାଲିଛି । ସେତେବେଳେ ପରା ସେ ଚା' ଦୋକାନରେ ତମର ସବୁ ସେଇ କଥା ପଡ଼ୁଥିଲ···ମତେ ଦେଖି ଚୁପ୍ ଚାପ ହେଇଗଲ । ମୁଁ କଣ କଛି ଜାଣି ପାରିଲି ନାହିଁ ?

ବିଶୁ—ଓ ! ତମେ ତା ହେଲେ ଜାଣି ସାରିଲଣି ? ଶୁଣିରେ ମନୁ ! ଇଏ ସେକଥା ଜାଣି ସାଇଲେଣି ।

ମନୁ—ତମେ ତା' ହେଲେ ତାଙ୍କର ଘରକୁ ଯାଇଥିଲ ?

କାହ୍ନୁ—ହଁ, ଯାଇଥିଲି !

ବିଶୁ—କାହିଁକି ? ତମେ କାହିଁକି ସେଠିକି ଯାଇଥିଲ ? ତମର ସେଠି କି କାମ ?

କାହ୍ନୁ—ମୋ' କାମ କଥା ତମେ କାହିଁକି ପଚାରୁଚ ବାବୁ ?

ବିଶୁ—ମୂଳ କଥାତ ତମେ ଜାଣିଲଣି—ଆମେ ବି ଜାଣିଲୁଣି । ଏଣିକି ତମ ଆମ ଭିତରେ ପଚରା ପଚରି ହେଲେ ଦୋଷଟା କ'ଣ ? —ନା କଣ ମନୁ ?

ମନୁ—ଆଛା ଏଇ ଯେ ଶାମବାବୁ···ସିଏ କ'ଣ ତମର ବନ୍ଧୁ ବାନ୍ଧବ ?

କାହ୍ନୁ—ହଁ ହେ ବାବୁ ! କହିଲେ କୁଳ କୁଟୁମ୍ବକୁ ଲାଜ ନ କହିଲେ କୁଳ ଭସି ଯାଉଚ !···ବନ୍ଧୁ ବାନ୍ଧବ ବୋଲି ତ ମୁଣ୍ଡ ତଳକୁ ହେଇଗଲାଣି ।

ବିଶୁ—ଗାଁ ଆଡ଼େ ତାଙ୍କର କ'ଣ କିଛି ସମ୍ପତ୍ତି ବାଡ଼ି ଅଛି ?

କାହ୍ନୁ—ଗୋଟାପା । ବିଶ୍ୱାଏ ବି ନାହିଁ । ଘର ଡ଼ିହ ଖଣ୍ଡିକ ବି ବନ୍ଧା ପଡ଼ିଚ ।

ମନୁ—ହୁଁ···

କାହ୍ନୁ—ଆଗେ ଠାଠାରେ ଗୃହକଷ୍ଟ କରୁଥିଲେ ! ସେଠୁ ଗୃହକଷ୍ଟ ଗଲା !···ଏବେ ପୁଣି ସେ ରାଜୁବାବୁଙ୍କ ଦପ୍ତାରୁ···

ବିଶୁ—ଓ ! ରାଜୁବାବୁ ? ସିଏ କେମିତି ତମ ଭଳି ତାଙ୍କର ବନ୍ଧୁ ବାନ୍ଧବ ହୁଅନ୍ତି ପରା ?

କାହ୍ନୁ—ଆଜ୍ଞା ବାବୁ ! ଏତେ କଥା ତମେ ମତେ କାହିଁକି ପଚାରୁଚ କହିଲ ?

ବିଶୁ—ଚୁଲି ମନୁ ଯିବା । ସେ ଆମକୁ ଅବିଶ୍ୱାସ କଲେଣି !

କାହ୍ନୁ—ନାଇଁ ବାବୁ ବିଶ୍ୱାସ ଅବିଶ୍ୱାସ କଥା ନୁହେଁ ଯେ···

ମନୁ—ଆଉ ତେବେ କ'ଣ ?

ବିଶୁ—ତୁ ବି କେମିତିକା ମନୁ ! ସେ ରାଜୁବାବୁ ତାଙ୍କର ବନ୍ଧୁ ବାନ୍ଧବ ହେଇ ନ ଥିଲେ ତୁଚ୍ଛାଠାରେ ତାଙ୍କର ଏତେ ଉପକାର କରନ୍ତେ ?

କାହ୍ନୁ—କି ବନ୍ଧୁ ବାନ୍ଧବ ? ଏମିତି, ତମ···ମୋଭଳି ରାସ୍ତାରେ ଘାଟରେ ଦେଖା । ସେଇଥିରୁ ଏ ଭାବ ନାବ । ଶାମବାବୁ ତ ତମର ଏ ସାଇରେ ବର୍ଷରୁ ଉପର ହବ ଘର ଭଡ଼ା ନେଇ ରହିଲେଣି—ତମେ କ'ଣ ଏ ହାଲ ଜାଣି ନ ଥିବ ?

ବଶୁ—ଜାଣନ୍ତୁ ନାହିଁ କାହିଁକି ଯେ ? ହେଲେ ସେ ତାଙ୍କ ଦୁଃଖରେ ଅଛନ୍ତି—ଆମେ ଆମ ଦୁଃଖରେ ଅଛୁ, ଆଜି ଏ ଗୋଟାଏ ଘଟଣା ଘଟିଗଲା ବୋଲି ଏ କଥା ପଡ଼ୁଚି । ହଁ ଯାଇଥିଲ ତବେ ତାଙ୍କ ଘରକୁ ? କେମିତି ଅଛନ୍ତି, ଦେଖି ଆସିଲ ?

କାହ୍ନୁ—ଆରେ ବାବୁ ! ସିଏ ତାଙ୍କର ଯେମିତି ରହିବେ ରୁହନ୍ତୁ-ହେଲେ ବନ୍ଧୁ ବାନ୍ଧବ ଲୋକ ହେଇ,···ଏମିତି ଗୋଟାଏ ଘଟଣା ଘଟିଗଲା ପରେ···ଆମର ଜରିଆରେ ଝିଅଟାର ବାହାଘର ଉଠେଇ ଦବାକୁ ବସିଚନ୍ତି ! ସତ କହୁଚି ବାବୁ···ଏଇ କଥାଟାରୁ ମୋ ମନ ଏକାବେଳେକେ ଖରାପ ହେଇ ଯାଇଚି ।

ମନୁ—ହବାର କଥା ! ମନ ଖରାପ ହେଲେ ଦୁନିଆଁ ଏକାବେଳକେ ବନ୍ଦ ହେଇଯାଏ ?....ହଉ ତମେ ଯାଅ ବାବୁ....ଗାଧୁଆ-ପାଧୁଆ ଖିଆ ପିଆ କରି ଟିକେ ସୁସ୍ଥ ହବ ଯାଅ ।

କାହ୍ନୁ—ହିଁ, ହିଁ, ହିଁ ! ମଣିଷ ଏଥର ଗୋଟାଏ ଦୁର୍ଯୋଗରେ ଘରୁ ବାହାରିଥିଲା ହେ···(ପ୍ରସ୍ଥାନ)

ବଶୁ—ଶୁଣିଲୁଟି ! ମୁଁ ଭାବିଥିଲି ଶାମବାବୁ ଯୁଆ ପରେ ଗୁଳକଣ୍ଟ ଗୁଡ଼ ଗାଁକୁ ଗୁଳପିବ ! ହେଲେ ସେ ବାଟ ତା’ର ନାହିଁ ।

ମନୁ—ଲୋକଟା କିନ୍ତୁ ଭରି ନିର୍ଲଜ....ଆଉ ତାଠୁ ନିର୍ଲଜ ସେ ଝିଅଟା....

ବଶୁ—ଯେତେ ନିର୍ଲଜ ହେଲେ ବ···ଯିଏ ଥରେ ରାସ୍ତାକୁ ପାଦ କାଢ଼ିଚି....ତା’ ପାଦ ସବୁ ଦିନ ପାଇଁ ସେଇ ରାସ୍ତାରେଇ ରହିବ ?

ମନୁ—ବାଜେ କଥା ।

ବନ୍ଧୁ—ଏଇଟା ପରା ସଂସାରର ନିୟମ ! ସେ ଭଲରେ ରହିବାକୁ ଚାହିଁଲେ ବି ରହି ପାରିବ ନାହିଁ ।

ମନୁ—ସତ କହୁଚ ବନ୍ଧୁ ! ଝିଅଟାକୁ ଦେଖିଲେ କାହିଁକି—ତା ପ୍ରତି ମୋର ଦୟା ହୁଏ ।

ବନ୍ଧୁ—ହଁ ! ମୋର ବି ଦୟା ହଉଚି · ଦୟା ନ ହେଲେ ତା' ଆଡ଼କୁ ମନ ଟଳିବ କାହିଁକି ? ଆଉ ମନ ନ ଟଳିଲେ—

ମନୁ—ବନ୍ଧୁ ! ସତରେ କ'ଣ ଭୁ···

ବନ୍ଧୁ—ଏଇନେ ଦିନ ଏଗାରଟା । ମୁଁ ଖାଲି ଅପେକ୍ଷା କରିଚି ··

କେମିତି ଆଜି ରାତି ଏଗାରଟା ହେବ (ହସି) ଆ-ସିବା ଆ ।

ମନୁ—ଏଁ ···(କିଛି ବୁଝି ନ ପାରି) ଆଉରି ବନ୍ଧୁ ! ଶୁଣ···

(ପ୍ରଥମେ ବନ୍ଧୁ ଓ ପରେ ମନୁର ପ୍ରସ୍ଥାନ)



## ତୃତୀୟ ଦୃଶ୍ୟ

( ପ୍ରଥମ ଦୃଶ୍ୟର ସେଇ ଘର । ସମୟ—ସେଇ ଦିନ ରାତି । ଲଣ୍ଠନଟି ହାତରେ ଧରି ଶାମବାବୁ ଭିତରୁ ଆସିଲେ । ପଛରେ ପଛରେ ଗୀତା । )

ଶାମ—ଆ, ମା—ବସ ଏଇଠି ( ଟିକିଏ ଲଣ୍ଠନ ଟେକି ଦେଲାରୁ ଜଣା ଗଲା ସ୍ୱପ୍ନର ସେ ଦୁଃଖର କାଳିମା ଅନେକଟା ମୁହଁରୁ ଅପସରି ଯାଇଛି । ଦୁହେଁ ବେଶ୍ ଶାନ୍ତ )

ଗୀତା—ରଜତଭାଇ କ'ଣ ପୁଣି ଆସିଥିଲେ ବାପା ?

ଶାମ—ହଁ ମା, ସଞ୍ଜ ଆଗରୁ ଆସିଥିଲା ! ତୁ ଶୋଇ ପଡ଼ିଥିଲୁ ! ତତେ ଡାକିବାକୁ ଯାଉଥିଲି ମନା କଲା ! କହିଲା—କାଲିଠୁ ମୋଟେ ଶୋଇନି ଟିକେ ଶାନ୍ତିରେ ଶୋଉ !

ଗୀତା—ଆଉ ବୋଧେ ଆଜି ଆସିବେ ନାହିଁ ?

ଶାମ—ରାତି କେତେଟା ହେଲାଣି, କହିଲୁ ମା ?

ଗୀତା—ଏଇନେ ତ ଏଗାରଟା ବାଜିଲା !

ଶାମ—ନା, ଆଉ ଏତେବେଳେ ସେ ଆସିବ ନାହିଁ । ସେତେବେଳେ ମତେ କହୁଥିଲା—ସନ୍ଧ୍ୟାପରେ ଆସିବ ବୋଲି ! ମୁଁ ମନା କଲି । ଆଜି ଦିନ ସାରା ତା'ର ଆମର ପାଇଁ କଟିଛି ।

ଗୀତା—ବାପା !! ତମ ଦେହ ଭଲ ଲାଗୁ ନ ଥିଲା କହୁଥିଲ । ପାଣି ଗରମ କରି ଆଣୁଚି—ଗୋଡ଼ ଧୋଇ, ଶୁଅ ।

ଶାମ—ନାଇଁ ମା—କିଚ୍ଛି ଦରକାର ନାହିଁ ! ତୁ ଶୋଇବୁ ଯା…

ଗୀତା—ତମେ ଏଇନେ ଶୋଇବନି ?

ଶା.ମ—ହଁ—ମୁଁ ଶୋଇବ । ତୁ ଯା···

ଗୀମ—ଲଣ୍ଠନଟା ଏମିତ ଜଳୁଥାଉ !

ଶାମ—ଟିକଏ କମେଇ ଦେଇ ଯା । ସେ ଘରେ ଆଲୁଅ ଅଛିତ ?

ଗୀତା—ହଁ··· ( ଗୀତା ଲଣ୍ଠନ କମେଇ ଦେଇ ଯାଉଥିଲା )

ଶାମ—ଗୀତା ।

ଗୀତା—କ'ଣ ବାପା ?

ଶାମ—ତୁ···ଏକା ଶୋଇବୁ ?

ଗୀତା—ସବୁଦିନେ ତ ଏକା ଶୋଉଥିଲି···ଆଜି ଶୋଇବ ନାଇଁ କାହିଁକି ?

ଶାମ—ଆଜି···

ଗୀତା—କ'ଣ ବାପା !

ଶାମ—ନାଇଁ ମା—ମୋ କିଛି ନୁହେଁ । ଭଗବାନ ଅଛନ୍ତି । ତୁ ଯା— ଶୋଇବ ଯା ।

(ଗୀତା ଗ୍ଲଲଗଲା । ଶାମ ଭଗବାନଙ୍କ ଉଦ୍ଦେଶରେ ପ୍ରଣାମ କରି ଶୋଇଲେ । ପଞ୍ଚ ଅନ୍ଧକାର ଯନ୍ତ୍ର ସନ୍ଧୀ ମିଳେଇ ଯିବା ପରେ ଶୁଣାଗଲା, ଯେମିତ ଝରକା ପଟେ ଏ ଘରକୁ ଲକ୍ଷ୍ୟ କରି କିଏ ଦୁଇଥିଲା ମାରୁଛି ! ଶାମ ଉଠି କାନ ପାରିଲେ । କିଛି ବାରି ନ ପାରି ପୁଣି ଶୋଇବାକୁ ଚେଷ୍ଟା କରୁଥାନ୍ତି —ଝରକା ସେ ପଟୁ ଢେଲ ଆଲୁଅ ପଡ଼ିଲା....)

ଶାମ—କିଏ ?···କିଏ ଢେଲ ପକଉଛି···କିଏ (ଦରଜା ଖୋଲି ବାହାରକୁ ଗ୍ଲହିଁ) କିଏ ଢେଲ ପକଉଛି—କାହିଁ ? କେହି ତ ନାହାନ୍ତି ଏଠି ! (ଗୀତା ଆସିଲା)

ଗୀତା—କ'ଣ ବାପା ?

ଶାମ—ଗୋଟାଏ ଝଟ୍‌ ଆଲୁଅ ଆସି ଘର ଭିତରେ ପଡ଼ିଲା । ହେଲେ କାହିଁ କାହାରିକୁ ତ ଏଠି ଦେଖୁନି !

ଗୀତା—କେହି ସାଇକେଲରେ ଯାଉଥିବ···

ଶାମ—ହୋଇ ପାରେ···(କବାଟ ବନ୍ଦ କରି) ତୁ ଉଠି ଆସିଲୁ କାହିଁକି ଯା—ଶୋଇବୁ ଯା···କ'ଣ ଡରୁଚୁ ?

ଗୀତା— ନା, ଡରିବି କାହିଁକି ? (ଗୀତା ଚାଲିଗଲା ଶାମ ପୁଣି ଶୋଇଲେ ରାତି ବଢ଼ି ଚାଲିଲା)

(ଉତ୍କଣ୍ଠା ମୂଳକ ଯନ୍ତ୍ର ସଙ୍ଗୀତ ମଝିରେ ଅନ୍ୟ ଘରୁ ଗୀତାର ଆକୁଳ ଚିତ୍କାର ଶୁଣାଗଲା)

ଗୀତା—(ବଡ ପାଟିରେ) ଗୁଡ଼ ଦେ···ଗୁଡ ଦେ ମତେ ? ବାପା···ବାପା ···ବାପା···(ଡାକ ଡାକ ଏ ଘରକୁ ପଶି ଆସି ଭିତରୁ ଛିକୁଳି ଲଗେଇ ଦେଲା । ଶାମଙ୍କର ନିଦ ଭାଙ୍ଗିଗଲା । ସେ ଉଠି ବସିଲେ)

ଶାମ—ଏଁ—କ'ଣ ହେଲା ମା ? କ'ଣ ହେଲା ? ତୁ ଇମିତି ଗୋଟା ପଣେ ଥରୁଚୁ ? ଗୀତା ? (ଗୀତା ପାଟିରେ କଥା ନାହିଁ । ସେ ଖାଲି ଉଚ୍ଛ୍ୱସିତ ଭାବରେ କାନ୍ଦୁଥାଏ) କ'ଣ ହେଇଚି କହ ? ଏମିତି ବିକଳ ହେଇ କାନ୍ଦୁଚୁ କାହିଁକି ? ଏ ପଟୁ ଦରଜାଟା ପୁଣି ବନ୍ଦ କରି ଦେଇଚୁ···

(ଦରଜା ଆଡକୁ ଗଲା ବେଳକୁ ଗୀତା ବାଧା ଦେଲା)

ଗୀତା—ଯାଅନି ବାପା !

ଶାମ—କାହିଁକି ? ତୁ ସେ ଘରେ ଶୋଇଥିଲୁ ତ ?

ଗୀତା—ହଁ···ମତେ ଅଳ୍ପ ନିଦ ହେଇ ଆସିଥିଲା—

ଶାମ— ତା' ପରେ ?

ଗୀତା—ମତେ ଯେମିତି ଜଣାଗଲା ! ମୋ ନାଁ ଧରି ତମେ ମତେ ଡାକୁଚ···

ଶାମ—ମୁଁ ତ ତତେ ଆଦୌ ଡାକିନି !

ଗୀତା—ହଠାତ୍ ମୁଁ କିଛି ବୁଝି ନ ପାରି କବାଟ ଖୋଲି ଦେଲି···

ଶାମ—ସେଇଠୁ ?

ଗୀତା—ସେଇଠୁ ?···(ଆଉ କିଛି କହି ନ ପାରି କାନ୍ଦିଲା)

ଶାମ—ଗୀତା ! ଚୁପ୍ ହୋ ମା···ଚୁପ୍ ହୋ···

ଗୀତା—ମୁଁ କାନ୍ଦି କାନ୍ଦି ବଡ଼ ପାଟିରେ ତମକୁ ଡାକିଲାରୁ ମତେ ଛାଡ଼ ଦେଇ ପାଚେରୀ ଡେଇଁ ପଳେଇଗଲା ।

ଶାମ—ପାଚେରୀ ଡେଇଁ ପଳେଇଲା ? କିଏ ସେ ? (ଦରଜା ଆଡ଼କୁ ଗଲା ବେଳେ ଗୀତା ବାଧା ଦେଲା)

ଗୀତା—ନା ବାପା—ତମେ ଯାଅନି ! ଗଲା ବେଳେ ସେ ଧମକ ଦେଇ ଯାଇଛି···ଆମକୁ ଏ ସାଇରେ ରଖେଇ ଦେବନି !···ତା' କଥା ନ ରହିଲେ—

ଶାମ—ଏ ଦୁନିଆର କ'ଣ ଏଇ ବିଚାର ମା ! ଏ ଲୋକମାନେ କ'ଣ ଭାବନ୍ତି ! ଥରେ ଯିଏ ଗୋଟାଏ ଭୁଲ କଲା....

ଗୀତା—ସେଇ କଥା ସେ ମତେ କହୁଥିଲା ବାପା କହୁଥିଲା—ଥରେ ଯିଏ ରାସ୍ତା ଉପରେ ପାଦ ଥୋଇଛି···ସବୁଦିନ ପାଇଁ ସେଇ ରାସ୍ତା ଉପରେ ସେ ରହିବ···ଚାଲ ବାପା ଆମେ ଏଠୁ ଚାଲିଯିବା !

ଶାମ—କୋଉଠିକି ଯିବାକୁ କହୁଚୁ ମା ?

ଗୀତା—ଗାଁକୁ !

ଶାମ—ଗାଁକୁ ? ଗାଁ କଥା କ'ଣ ତୁ ଜାଣିନୁ ? ଗାଁରେ ଆମର କ'ଣ ଅଛି ? ପୁଣି ଚାକିରି ଖଣ୍ଡିକ ଛାଡ଼ ଦେଲେ ଆମେ ଖାଇବା କ'ଣ ? ଚଳିବା କେମିତି ?

ଗୀତା—ଏ କଟକ ସହରରେ କ'ଣ ରହିବାକୁ ଆଉ କୋଉଠି ଜାଗା ନାହିଁ···?

ଶାମ—ହଉ ମା··ରାତ ପାହୁ....କାଲି ରଜୁ ଆସୁ ସେ କଥା ମୁଁ ବୁଝିବି....

ଗୀତା—ଆଜି ରାତି ? ଆଜି ରାତିଟା କ'ଣ ଆମେ ଏଇଠି ରହିବା ?

ଶାମ—ମୁଁ ପରା ତୋ ପାଖରେ ଅଛି ମା—ଡରୁଚୁ କାହିଁକି ? ତୁ ଏଇଠି ଶୋ ।···ଏଇଘରେ—(ଘରର କୋଣଟାଏ କଡ଼କୁ ଚାହିଁ) କିଏ ସେ ? କିଏ ସେଠି ଠିଆ ହେଇଛି....କିଏ ?

ଗୀତା—କାହିଁ ବାପା ? କେହି ତ ନାହାନ୍ତି....?

ଶାମ—ନାହିଁ ମା—କେହି ନାହିଁ । ....ଇଏ ମୋ ମନର ଗୋଟାଏ ଭ୍ରମ !···ସେ ଚାଦରଟାକୁ ଦେଖି ମୋ ମନରେ କଲି କିଏ ଯିମିତି ଠିଆ ହେଇଛି !

ଗୀତା—ତମେ ଶୁଅ ବାପା !

ଶାମ—ଆଉ ତୁ ?

ଗୀତା—ମୁଁ ଶୋଇବି ନାହିଁ....ଏଇଠି ତମ ପାଖରେ ବସି ରହିବି !

ଶାମ—ସାରା ରାତି ଏମିତି ବସି ରହିବୁ ?

ଗୀତା—ହିଁ—ତମେ ଶୁଅ....

ଶାମ—ବୁଝିଲି ମା ! ତୁ ଡରୁଚୁ ! ଏ ଜାଗା···ଏ ଘର ଏ ମଣିଷ ଜାତି ଉପରେ ତୋ'ର ଆଉ ବିଶ୍ୱାସ ନାହିଁ ।···ହେଲେ ମା, ଭଗବାନ ତ ଅଛନ୍ତି ?

ଗୀତା—ବାପା !....

ଶାମ—ହଁ ମା ଭଗବାନ ଅଛନ୍ତି ! ଏ ଦୁନିଆଁ ଆଖିରେ ହୁଏତ ତୁ ଗୋଟାଏ ଭୁଲ କରିଚୁ ! ମଣିଷ ଆଖିରେ ତୋ' ଭୁଲ ଧରା ପଡ଼ିଚି !....ଯଦି ତୋ'ର ସେଇ ଭୁଲର ଶାସ୍ତି ଦବା ପାଇଁ ସ୍ୱୟଂ ଭଗବାନ ତତେ ଏ ତ୍ରିଭୁବନରେ ସ୍ଥାନ ନ ଦିଅନ୍ତି....ତା' ହେଲେ ସେତେ ବେଳେ ମଣିଷ କି ଭଗବାନ....ଆଉ କାହାର ବିରୁଦ୍ଧରେ ତୋ'ର ଅଭିଯୋଗ କରିବାର କିଛି ନ ଥିବ ମା ! ତୁ ତାଙ୍କୁଇ ଡାକ ସେଇ ତୋ'ର ଶେଷ ଭରସା....ତୁ ତାଙ୍କୁଇ ଡାକ !





# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ରାଜୁ ଘରର ଗୋଟିଏ କକ୍ଷ । କକ୍ଷଟିକୁ ରାଜୁର ବୈଠକ ଖାନା ତଥା ଲାଇବ୍ରେରୀ କୁହାଯାଇ ପାରେ, କିମ୍ବା ରାଜୁର ସ୍ତ୍ରୀ ଶାନ୍ତିର ଅବସର—ବିନୋଦନ—ଗୃହ ମଧ୍ୟ କୁହାଯାଇ ପାରେ । ରାଜୁର ଅବସ୍ଥା ଉଚ୍ଚ—ମଧ୍ୟ—ବିତ୍ତ ଶ୍ରେଣୀର । ଦୃଶ୍ୟ ସଜ୍ଜା ଅତି ସୁରୁଚି-ସମ୍ପନ୍ନ । କକ୍ଷଟିକୁ ଲାଗି ଉପରକୁ ସିଡ଼ିଟିଏ ଅଛି ! ଗୀତା ଏ ଘରକୁ ଆସିଯାଇଛି ! ସମସ୍ତ ଅପରାହ୍ଣ । ଦୃଶ୍ୟ ଆରମ୍ଭରେ ଦେଖାଗଲା ରାଜୁ ବସି ଚା' ଖାଉଛି !... ପାଖରେ ଠିଆ ହୋଇଛି ତାର ସ୍ତ୍ରୀ ଶାନ୍ତି—ବୟସ ବାଇଶିରୁ ପଚିଶ । ରାଜୁ ନୀରବରେ ଚା' ଖାଉଥାଏ ଶାନ୍ତି ଗୋଟିଏ ଦିଆସିଲି କାଠିରେ ନିରର୍ଥକ ଭାବରେ ଗାର ଟାଣୁଥାଏ, ଦୁହେଁ ନିଜ ନିଜ ଚିନ୍ତାରେ ବ୍ୟସ୍ତ ଚା' ପିଆ ସରିଲା ପରେ ରାଜୁ ଯେମିତି କ'ଣ ଖୋଜିଲା । ଶାନ୍ତି ସିଗ୍ରେଟ୍ କେଶରୁ ସିଗ୍ରେଟ୍‌ଟିଏ ବାହାର କରି ଦେଲା ଓ ନିଜେ ଦିଆସିଲି ଜଳାଇ ଦେଲା)

ଶାନ୍ତ—ତୁ' ଆଜ ଗୀତା ତିଆରି କରିଚ !

ରାଜୁ—ଗୀତା ?....

ଶାନ୍ତ—ହଁ ! ତୁ' କ'ଣ ଭଲ ହୋଇନ ?

ରାଜୁ—ହଁ ! ତୁ' ଭଲ ହୋଇଚ ଯେ···କିନ୍ତୁ···ସୁନାମା କ'ଣ ନାହିଁ ?

ଶାନ୍ତ—(ହସି) ଆଗୁ କଥା ତୁମେ କହୁଚ ? ସୁନାମା ପୁଣି ଯିବ କୁଆଡ଼େ ? ସାରା ଦୁନିଆରେ ତ ତା'ର କେହି କୋଉଠି ନାହାନ୍ତି ବୋଲି ପାଞ୍ଚ ବର୍ଷ ହେଲା ତୁକଶୀ ନାଁରେ ସେ ତମର ଏଠି ଆଶ୍ରୟ ନେଲା ପରି ରହିଚି । ସେ ପୁଣି ଯିବ କୁଆଡ଼େ ?

ରାଜୁ—ମୋ କଥାର ଏତେ ବଡ଼ କୈଫିୟତ୍ ମୁଁ ଚାହିଁ ନ ଥିଲି । କି ଗୀତା ତୁ' କଲା ବୋଲି ସୁନାମାକୁ ଦୋଷ ଦଉ ନ ଥିଲି....

ଶାନ୍ତ—ବୁଝିଲି । ସୁନାମା ଥାଉ ଥାଉ ଗୀତା କାହିଁକି ତୁ ତିଆରି କଲା....ଏଇଆ ତମେ କହୁଚ ତ ?

ରାଜୁ—ହଁ !

ଶାନ୍ତ—ଏଥିରେ ବିଚାରୀ ସୁନାମାର କିଛି ଦୋଷ ନାହିଁ ! ଗୀତା ତାକୁ କିଛି କରେଇ ଦବାକୁ ନାରାଜ । ବିଶେଷତଃ ତମ ତୁ'— ତମ ଜଳଖିଆ । ତମ ସିଗ୍ରେଟ୍ କେଶରେ ତ ଆଜ ସେଇ ସିଗ୍ରେଟ୍ ଭର୍ତ୍ତି କରି ସେ ଘରେ ରଖିଥିଲା—(ରାଜୁ ଯିବାକୁ ଉଠିଲା) ତମେ ........ତମେ ବାହାରିଲଣି ପରା, କେତେବେଳେ ପୁଣି ଫେରିବ ?
(ରାଜୁ ଯେମିତ ଅନ୍ୟମନସ୍କ ଭାବେ ଫେରିଲା)

ରାଜୁ—ମୁଁ ଭାବୁଥିଲି ଶାନ୍ତ....(ଟିକିଏ ରହି) ଗୀତା ସମ୍ବନ୍ଧରେ ଆମ ଦୁହିଁଙ୍କ ଭିତରେ ଖୋଲା ଖୋଲି ଆଲୋଚନା ହୋଇ ଯିବା ଉଚିତ ।

ଶାନ୍ତ—କି ଆଲୋଚନା ?

ରାଜୁ—ସେ ଦିନ ଯୋଉ ପରସ୍ଥିତିରେ ମୁଁ ଗୀତାକୁ ଏଠିକି ଆଣିଲି....!! ତମକୁ ତ ମୁଁ କହିଚି—ସେଦିନ ସକାଳେ ମୁଁ ତାଙ୍କ ବସାରେ ପହଞ୍ଚି ଦେଖିଲି....ଗୋଟିଏ ରାତିର ବ୍ୟବଧାନରେ ଯେମିତି ବାପ ଝିଅ ଦୁହିଁଙ୍କ ବୟସ ଦୁଇ ଗୁଣ ବଢ଼ି ଯାଇଚି ।....ସାରା ରାତି ସେ ଦୁହିଁଙ୍କ ଆଖିରେ ନିଦ ନାହିଁ ।

ଶାନ୍ତ—ଗୀତା ଆସିବାର ଏଠିକି ଆଠ ଦିନ ହୋଇଗଲା, ସେ କାହିଁକି ଏଠିକି ଆସିଲା....ତାକୁ ତମେ ଆଣି ଭଲ କରିଚ କି ଭୁଲ କରିଚ.... ଏ କଥା ତ ଏ ଆଠ ଦିନ ଭିତରେ ମୁଁ ତମଠୁ କେବେ ଜାଣିବାକୁ ଚାହିଁନି କି ଏ ସମ୍ବନ୍ଧରେ ମୁଁ ତମକୁ କିଛି କହିନି ।

ରାଜୁ—ଜାଣିବାକୁ ନ ଚାହିଁ ତମେ ଯେମିତି ଅନେକ କିଛି ମତେ ଜଣେଇ ଦେଇଚ ଶାନ୍ତ । କିଛି ନ କହି ଜୋର କରି ତମ ନିଜ ଭିତରେ ବହୁ ଅକୁହା କଥା ତମେ ଚାପି ରଖିଚ ।

ଶାନ୍ତ—ଶୁଣ ! ଗୀତା ମୋର ପର ସ୍ତ୍ରୀ ଜନ୍ମ ପାଇଚି ମୁଁ ବି ଦିନେ ଗୀତା ପରି ଅଭିଆଡ଼ୀ ଝିଅ ଥିଲି । ଏ ଅବସ୍ଥାରେ ମୁଁ କ'ଣ କହିବି କଣ ନ କହିବି, ସେ ଉପଦେଶ ତମେ ମତେ ଦେଇ ପାରିବ ?

ରାଜୁ—ତମେ ତ ଲକ୍ଷ୍ୟ କରିଥିବ ଶାନ୍ତ, ଏତେ ବଡ଼ ଗୋଟାଏ ଦୁର୍ଘଟଣା ଘଟିଗଲା—କିନ୍ତୁ ଏଠିକି ଆସିଲା ପରେ ସେ ସବୁ ଏକାବେଳକେ ଭୁଲି ଯାଇଚି । ଏଠି ହସ, ଖୁସି ଆନନ୍ଦ ଭିତରେ ତା' ଦିନ କଟୁଚି !

ଶାନ୍ତ—କହୁଛ ତ ! କାଲି ସେ ମୋ ପାଖରେ ବସି ଗୀତ ଗାଉଥିଲା ।

ରଜୁ—ବାର ବାର କର ଏ କଥା ତାଙ୍କୁ ମୁଁ କହୁଚ ଯେ, ତା'ର ସେ ଗଲା କଥା ସବୁ ଯେମିତି ସେ ଭୁଲିଯାଏ ?

ଶାନ୍ତ—ଏକା ମୁଁ ନୁହେଁ—ଏ ଘରେ ସମସ୍ତେ ତମର ଏଇ କଥା ମାନି ଚଳୁଚନ୍ତି ! ତମେ ବି ତ ଲକ୍ଷକରିଥିବ । ସେ ସମ୍ବନ୍ଧରେ ପଦେ ହେଲେ ତାଙ୍କୁ କେହି କିଛି କୁହନ୍ତିନି !

ରଜୁ—ତଥାପି—

ଶାନ୍ତ—ଆଉ କ'ଣ ତୁମେ କହୁଚ ? ଯୋଉ କଥାଟାକୁ ନିଜେ ଗୀତା ସହିତ ସମସ୍ତେ ଭୁଲି ଯିବାକୁ ଚାହୁଁଚନ୍ତି—ତମେ କାହିଁକି ତାକୁ ଭୁଲି ପାରୁନ ?

ରଜୁ—ଶାନ୍ତ !!

ଶାନ୍ତ—କୁଆଡ଼େ ବାହାରିଥିଲ ପରା ? ଡେରି ହଉଚି ଯାଅ ! ସଞ୍ଜ ଆଗରୁ ଫେରି ଆସିବ !

ଅପା—(ଭିତରୁ) ରଜୁ କୁଆଡ଼େ ଗଲୁ କି ? ରଜୁ ?

ରଜୁ—କ'ଣ ଅପା ? (ଅପା ଆସିଲେ ! ବୟସ୍କା ବିଧବା । ଏ ଘରେ ସେ ସାର୍ବଜନୀନ ଅପା । ରଜୁର ପିଉସୀ)

ଅପା—ନାଇଁ, କୁଆଡ଼େ ଯିବୁ ବୋଲି ବାହାରିଥିଲୁ ଗଲୁଣି କି ନାହିଁ ପଚାରୁଥିଲି !

ରଜୁ—ଯିବାକୁତ ବାହାରିଚି ! କ'ଣ କାମ ଥିଲା ?

ଅପା—ବଜାର ଆଡ଼େ ଯିବୁ ତ ?

ରଜୁ—ହଁ !

ଅପା—କୋଉ ବଜାର ?

ରଜୁ—ତୋ'ର କୋଉ ବଜାରରେ କି କାମ ଅଛି ଶୁଣେ ?

ଅପା—ମିନ୍ଧୁଆ ବଜାର !

ରାଜୁ—ମିନ୍ଧୁଆ ବଜାର ! ମିନ୍ଧୁଆ ବଜାର କୋଉଠି ?

ଶାନ୍ତ—ମାଛୁଆ ବଜାର ହୋଇଥିବ ମ ! ନାହିଁ ଅପା !

ଅପା—କେଜାଣି ! ହୋଇଥିବ !

ରାଜୁ—ତୋ'ର ଦରକାର କ'ଣ ?

ଅପା—ଗୋଟାଏ ମୟୂର ପଙ୍ଖା !

ରାଜୁ—ମୟୂର ପଙ୍ଖା !! ମାଛୁଆ ବଜାରରେ ମୟୂର ପଙ୍ଖା ?

ଅପା—ହଁ ପରା, ସେଇଠି ମିଳେ ।

ଶାନ୍ତ—କିଏ କହିଲା ସେଠି ମୟୂର ପଙ୍ଖା ମିଳେ ବୋଲି

ଅପା—ସେଇ ଯୋଉ ମାଇପିଟା ସେ ଦିନ ଆସି ନ ଥିଲା ? ପୁରୁଣା ଲୁଗା ନେଇ ନୂଆ ସିଲଭର ବାସନ ଦଉଥିଲା ?—ସେଇ କହୁଥିଲା ସେଠି ମିଳେ ବୋଲି ।

ରାଜୁ—କି ସବୁ ଅଦ୍ଭୁତ କଥା ତୁ ଯେ କହୁ ଅପା ? ··କିଏ ସେ କୋଉଠିକାର—ତତେ କ'ଣ କହିଗଲା ତୁ ତା'ର କଥାରେ ବିଶ୍ୱାସ କରିଗଲୁ ?

ଅପା—ନାହିଁ ମ, ସେ ମାଇପିଟା ପରା ତିନି ଥର କରି ତା' ଆଖି ବୁଲାଇ ମତେ କହି ଯାଇଚି ?

ଶାନ୍ତ—ସିଏ ପରା ଅପା, ହିନ୍ଦୀରେ କଥା କହୁଥିଲା ? ତମେ ହିନ୍ଦୀ ବୁଝି ପାରିଲ ?

ଅପା—ମୁଁ ସିନା ବୁଝି ପାରୁ ନ ଥିଲି । ମୋ ପାଖରେ ପରା ସୁନା ମା ଠିଆ ହୋଇଥିଲା···ସେଇ ମତେ ବୁଝେଇ ଦେଲା !

ରାଜୁ—ସୁନା ମା ତା' ହେଲେ ହିନ୍ଦୀ ଶିକ୍ଷା ଦବାକୁ ଆରମ୍ଭ କଲାଣି !···

ଶାନ୍ତ—ନାଇଁ ମ ଅପା, ମାଛୁଆ ବଜାରରେ ମୟୂର ପଙ୍ଖା କୋଉଠୁ ମିଳିବ ?

ଅପା—ତା' ହେଲେ ମିଛୁଆ ବଜାର ହେଇଥିବ ! ଆଲୋ ସୁନା ମା—

ରାଜୁ—ଥାଉ ଅପା, ସୁନା ମା'କୁ ଡାକିବା ଦରକାର ନାହିଁ ମୟୂର ପଙ୍ଖା ମୁଁ ଦେଖିବ !

ଅପା—ଝଙ୍କା ଆଣି ଦଉଛୁ ରହ !

ଶାନ୍ତ—ଝଙ୍କା କ'ଣ ତାଙ୍କ ପାଖରେ ନାହିଁ ? ଝଙ୍କା ଅଛୁ ସେ ଆଣିବେ !

ରାଜୁ—ଗୀତା କ'ଣ କରୁଚି ଅପା ?

ଅପା—କଏ ?

ରାଜୁ—ଗୀତା !

ଅପା—ମୁଁ ଜାଣିନାଇଁ । (ଗୁଲିଗଲା ପରେ ଶାନ୍ତ ହସିଲା)

ରାଜୁ—ହସିଲ ଯେ ?

ଶାନ୍ତ—ଅପାଙ୍କ ଢଙ୍ଗ !! ସେ କ'ଣ ଜାଣନ୍ତି ନାଇଁ ଗୀତା କ'ଣ କରୁଚି ।

(ଗୀତା ଆସିଲା । ବେଶଭୂଷା ସୁନ୍ଦର)

ଗୀତା—ଭାଇ-ଭାଇ···।

ରାଜୁ—କ'ଣ ?

ଗୀତା—ତମ ସିଗ୍ରେଟ୍ କେଶ୍ ?

ରାଜୁ—(ହସି) କାଇଁ ? କୋଉଠି ଅଛୁ ?

ଗୀତା—ତମ ପକେଟ୍‌ରୁ କେଶ୍‌ଟା ନେଇ ସିଗ୍ରେଟ୍ ଭର୍ତ୍ତି କରି ସେ ଘରେ ରଖିଥିଲି···ଏଇନେ ପାଉ ନାହିଁ ତ ?

ରାଜୁ—ଗଲା ? କେଶ୍‌ଟା ହଜିଲା ?

ଗୀତା—ହଜିଗଲା ?···ନୂଆଭଉଣୀ ! ତମେ ଦେଖିନ ?

ରଞ୍ଜୁ—କେଶ୍‌ଟା ଗୀତା ହଜେଇଲାଣି ଶାନ୍ତ ! ତମେ ବୁଝ !

ଶାନ୍ତ—ସିଏ ତ ହଜେଇଲା....ମୁଁ ଆଉ କ'ଣ ବୁଝିବ ?

ଗୀତା—(ଖୋଜି ୨ ସିଗ୍ରେଟ୍ କେଶଟିକୁ ଶାନ୍ତର ହାତ ପାଖୁଲା ତଳେ ଟେବୁଲ ଉପରେ ଦେଖିଲା) ହେଇ ଦେଖ—ଏଇଠି ଅଛି । ନୂଆଭଉଣୀ ! ତମେ ଏମିତି ! କେଶ୍‌ଟାକୁ ଆଣି ମଝିରେ ଭୁଲେଇ ଦେଉଥିଲ ! (ଛଡ଼େଇ ନେଇ) ନିଅ ଭାଇ ! (ରଞ୍ଜୁ ପକେଟରେ ଭର୍ତ୍ତି କରି ଦେଲା )

ରଞ୍ଜୁ—(ହସି) ଦେଖିଲ ତ ? ଗୀତାକୁ ତମେ ପାରିବ ? ହଁ···ମୁଁ ଯାଉଚି !

ଗୀତା—ସଜ ଆଗରୁ ଫେରିବ ତ ଭାଇ ?

ରଞ୍ଜୁ—ହଁ, ମୁଁ ସଜ ଆଗରୁ ଫେରିବ ! (ରଞ୍ଜୁ ଚାଲିଗଲା ଗୀତାର ଏପରି ଆତ୍ମିୟତା ଯୋଗୁଁ ଶାନ୍ତ ଆତ୍ମ ସମ୍ବରଣର ଚେଷ୍ଟା କରି ସୁଦ୍ଧା ମୁହଁ ତାର ଗମ୍ଭୀର ହୋଇ ଆସୁଥିଲା)

ଗୀତା—ନୂଆଭଉଣୀ ! (ଶାନ୍ତ ଯେମିତି କଣ ଭାବୁଥାଏ) ନୂଆଭଉଣୀ !

ଶାନ୍ତ—ଏଁ ।

ଗୀତା—କ'ଣ ହେଲା ନୂଆଭଉଣୀ ?

ଶାନ୍ତ—(ପୂର୍ବ ଅବସ୍ଥାକୁ ଫେରି ଆସିଲା) କାହିଁ···କିଛି ନାହିଁ ତ

ଗୀତା—ଭାଇ ସବୁଦିନେ ରାତିରେ ଘନ୍ତା ରୁଟି ଖା'ନ୍ତ ନା ?

ଶାନ୍ତ—ହଁ ।

ଗୀତା—ମୁଁ କାଲି ଦେଖିଚି-ସେ ସୁନା ମା ଅଟା ଭଲ ଯନ୍ତୁ ନାହିଁ ।

ଶାନ୍ତ—ଆଚ୍ଛା, ମୁଁ ତାକୁ କହିଦେବି !

ଗୀତା—ମୁଁ କ'ଣ ତାକୁ କହିନି କି ? ହେଲେ ତା' ଦ୍ୱାରା ମୋଟେ ହେଇ ପାରିବନି ! ଭାଇଙ୍କ ରୁଟି ମୁଁ ନିଜେ ତିଆରି କରିବ !···

....(ଫେର ପଡ଼ିଲ ବେଳକୁ ବନ୍ଧୁ ଥାକ ଉପରେ ନଜର ପଡ଼ିଗଲା) ଇସ୍ ! ଦେଖିଲଣି ନା ନୂଆ ଭେବୀ ଖାଲିଙ୍କ ବହି ଥାକରେ କେମିତି ଧୂଳି ଭର୍ତ୍ତି ! କେହି କ'ଣ ଯାକୁ ଝାଡ଼ନ୍ତି ନାହିଁ ?

ଶାନ୍ତ—କିଏ ଆଉ ଝାଡ଼ିବ ? ସମସ୍ତଙ୍କର ତ ସବୁବେଳେ କାମ ଲାଗି ରହିଛି ! ଯାକୁ ଝାଡ଼ିବ କିଏ ?

ଗୀତା—ଫୁଲ ଝାଡ଼ୁଟା କାହିଁ ?···ଏଇତ ଏଇଠି ଅଛି ।

ଶାନ୍ତ—ତମେ ଝାଡ଼ିବ ?

ଗୀତା—ହଁ ।

ଶାନ୍ତ—ଏଇନେ ?

ଗୀତା—ହଁ···! ଝାଡ଼ିବ ନୂଆବୌ ?

ଶାନ୍ତ—ମତେ ଆଉ କ'ଣ ପଚାରୁଚ ?

ଗୀତା—ଭାଇ ଗାଳି ଦେବେ ନାହିଁ ତ ?

ଶାନ୍ତ—(ହସି) ଧନ୍ୟ ତମେ ଝିଅ—ତମେ ତାଙ୍କର ଉପକାର କରିବ ସେ ପୁଣି ତମକୁ ଗାଳି ଦେବେ !

ଗୀତା—ବେଶ୍ ! (ଝାଡ଼ିବା ପାଇଁ ପ୍ରସ୍ତୁତ ହେଲା)

ଶାନ୍ତ—ମୁଁ ଛାତ ଉପରକୁ ଯାଉଚି ଗୀତା....କାମ ସାରି ତମେ ଛାତ ଉପରକୁ ଆସିବ ।

(ଶାନ୍ତ ଉପରକୁ ଗଲା ! ଗୀତା ବହି ଝାଡ଼ିବା ସଙ୍ଗେ ସଙ୍ଗେ ଗୀତଟିଏ ଗାଇବାକୁ ଆରମ୍ଭ କଲା । ଥାକ ଉପରୁ ବହି କେତେ ଖଣ୍ଡ ପଡ଼ି ଯିବାରୁ ଗୀତା ଥାକ ପଛକୁ ଚାଲିଗଲା । ଏତିକି ବେଳେ ବାହାରୁ ଆସିଲା ମନୋଜ ବାଇଶି ତେଇଶି ବର୍ଷର ସୁଶିକ୍ଷିତ ଯୁବକ । ରାଜୁର ଦୂର ସମ୍ପର୍କୀୟ ଭାଇ । ସେ ଆସି ନୀରବରେ ଗୀତ ଶୁଣିବାକୁ ଲାଗିଲା ।)

## ଗୀତ

କଳା ପଟଗ୍ରୁଇ ଗ୍ରୁଇ ରଖିଥିଲା ଗୋଲାପରେ—
ଓଢ଼ଣୀ ଘେରାଇ ।୧।

ସେ ଘନ ବାଦଲ ତଳେ ବନ୍ଦୁଥିଲା ଖେଳ,
ଧୂଆଁଳିଆ ଜଟା ମେଘ ବାନ୍ଧୁଥିଲା ମେଳ;
ବାରେ ବାରେ ଆସି ଅଳି ଝୁନ୍ଟୁ-ଝୁନ୍ଟୁ କଲା ଅଳି
ଅମାନଆଁ ଝଂଜା ଦେଲା ଦୂରେ ଘଉଡ଼ାଇ ।୧।

ଉଇଁଲା ଫୁକୁଆ ହତ ହେଲା ପାହାନ୍ତିଆ,
ଶୁଭ ଲଗନରେ ଡାକେ କଜଳ ପାତିଆ;
ରବିର କର ପରଶ ପୋଛିଲା ମନ ପରାସ
ଏଥର, ଚଲା ବାଦଲ ଦେଲା ସେ ଉଡ଼ାଇ ।

ମନୋଜ—ଏ ଯୁଗରେ ଅବଶ୍ୟ ବହୁ ଆଶ୍ଚର୍ଯ୍ୟ ଜନକ ଘଟଣା ଘଟୁଛି । କିନ୍ତୁ ନୂଆବୋ···ତମେ ଏ ଦିନେ ଗୀତ ଶିଖି, ଏତେ ସୁନ୍ଦର ଗାଇ ପାରିଲଣି···(ଗୀତାର ଗୀତ ବନ୍ଦ ହେଇଗଲା କିନ୍ତୁ ସେ ଥାକ ଉଢ଼ାଳରେ ବସି ରହିଥାଏ)

ତମକୁ ହାତ ଯୋଡ଼ୁଛି ନୂଆବୋ—ବନ୍ଦ କରନା-ଗାଅ— ତମ ହାତରୁ ଭେକ୍‌ଟି ମାଛର କାଲିଆ ଖାଇବି ବୋଲି ତମ ପାଇଁ ଏତେ ବାଛି ବାଛି ଏ ଫୁଲ ତୋଡ଼ାଟି ଆଣିଥିଲି । ମୋର କାଲିଆ ପଚ୍ଛେ ନ ହେଲା ନାଇଁ, ତୋଡ଼ାଟି ବର୍ତ୍ତମାନ ମୁଁ ଶ୍ରୀଚରଣରେ ଭେଟି କରୁଛି··· ଗୀତଟା ଗାଅ··· (ଫୁଲ ତୋଡ଼ାଟି ଧରି ଆଗେଇଲା ବେଳକୁ ଗୀତା ଠିଆ ହେଇଗଲା । ମନୋଜ ଚମକି ଉଠିଲା । ଉପରୁ ଅସିଲା ଶାନ୍ତି)

ମନୋଜ—ନୂଆବୋ ! ତମେ···

ଶାନ୍ତ—ମୁଁ ଗ୍ଲାସ ଉପରୁ ତମକୁ ଦେଖି ଆସୁଚ···ତମେ ହଠାତ୍ କେମିତ ଆସିଲ ?

(ଗୀତା କିଛି ନ କହି ସେଠୁ ଚାଲିଗଲା)

ଶାନ୍ତ—ଓ; ତମେ ତାକୁ ଚିହ୍ନି ନ ପାର ? ସେ ଗୀତା !

ମନୋଜ—ଗୀତା !!

ଶାନ୍ତ—ତମ ଭାଇଙ୍କ ଶାମ ମଉସାଙ୍କ ଝିଅ । ଗୀତା ।

ମନୋଜ—ଶାମ ମଉସାଙ୍କ ଝିଅ—ଓ—ଖବର କାଗଜର ସେଇ ଗୀତା ।

ଶାନ୍ତ—ହଁ !

ମନୋଜ—ସେ ଏଠି କାହିଁକି ? (ଗୀତାର ପରିଚୟରେ ସେ ଯେମିତି ସନ୍ତୁଷ୍ଟ ହେଲେନି)

ଶାନ୍ତ—ଏ ଫୁଲ ତୋଡ଼ା ?

ମନୋଜ—ଆଣିଥିଲି ତମ ପାଇଁ । କିନ୍ତୁ ମୋ କଥାର ଉତ୍ତର ଦିଅ । ସେ ଏଠି କାହିଁକି ?

ଶାନ୍ତ—ତମ ଭାଇ ଆସନ୍ତୁ, କହିବେ । ତୋଡାଟା ଦିଅ

ମନୋଜ—ନା—

ଶାନ୍ତ—ମୋ ପାଇଁ ଆଣିଥିଲ ପରା ଦିଅ ।

ମନୋଜ—ନା— ( ଟେବୁଲ୍ ଉପରେ ତୋଡ଼ାଟାକୁ ପକେଇ ଦେଲା ) ଚାଲ, ଭିତରକୁ ଚାଲ, (ଦୁହେଁ ଭିତରକୁ ଗଲେ) ଗୀତା ପୁଣି ଆସିଲା ବାକି କାମ ତକ ସାରିବା ପାଇଁ । କିନ୍ତୁ କିଛିଏ ପରେ ବାହାରୁ ଡାକ ଶୁଭିଲା )

ମଦନ—( ବାହାରୁ ) ରାଜୁବାବୁ ଘରେ ଅଛ···ରାଜୁବାବୁ, (ଗୀତା ଭିତରକୁ ଚାଲିଗଲା । ଆସିଲେ ମଦନ ବାବୁ । ମଧ୍ୟ ବୟସ୍କ ଲୋକ । ବେମାପ ପ୍ୟାଣ୍ଟ ଓ ଜାମା ପିନ୍ଧା ହୋଇଚ । ହାତରେ ଖଣ୍ଡିଏ ବାଡ଼ି ! ହାବଭାବରୁ ଜଣାଯାଏ ଏ ପରିବାର ସହିତ ତାଙ୍କର ସଂପର୍କ ଘନିଷ୍ଠ । ଆସିଲା ମାତ୍ରେ ନଜର ପଡ଼ିଲା ଫୁଲ ତୋଡ଼ାଟି ଉପରେ । ଆନନ୍ଦରେ ତାକୁ ଉଠେଇ ନେଇ) ବାଃ ! କି ସୁନ୍ଦର ଫୁଲ ତୋଡ଼ାଟି ! ରାଜୁବାବୁଙ୍କର ଏମିତି ଫୁଲରେ ସଉକ କେବେଠୁ ହୋଇଲାଣି ? ଏକା ବେଳକେ ସପ୍ତ ଜାତି, କି ନବ ଜାତି ଫୁଲର ସମାହାର । ଆଖିକୁ ଦିଶୁଚି ଯେମିତି, ନାକକୁ ବାସୁଚି ବି ସେମିତି ! ( ଖୁସିରେ ଶୁଙ୍ଘିଲେ ) ଓହୋ-ହୋ- କଣ୍ଟାଟାଏ ନା କ'ଣ, ଫୋଡି ହୋଇଗଲା !! "ଯୋଉଠି ଫୁଲ ସେଇଠି କଣ୍ଟା"—ଏ ନିୟମ ଭଗବାନ ଫୁଲ ଗଛ ତିଆରି କଲାବେଳେ ବାନ୍ଧି ଥିଲେ, ବୋଲି କ'ଣ, ମଣିଷ ଫୁଲ ତୋଡ଼ା ବାନ୍ଧିଲା ବେଳେ ତାକୁ ମାନିବ ?···ମୁହଁରୁ ଚମ ଉଠି ରକ୍ତ ବୋହିଲାଣିନା କ'ଣ ? (ଗୋଟିଏ ଶ୍ରେଷ୍ଠ ଆଇନାରେ ନିଜ ମୁହଁ ଦେଖି ଦେଖି ପର୍ଦ୍ଦା ଆଡ଼ୁ ଆଳରେ ଗୀତାର ମୁହଁ ଆଇନାରେ ଦେଖି ଯେମିତି ଚମକି ପଡ଼ିଲେ) ଏଁ, ଏ କିଏ ? ନୂଆ ମୁହଁଟିଏ ଜଣା ଯାଉଚି ତ ? କିଏ ଏ ଝିଅଟି ? (ଆଇନାରୁ ମୁହଁ ଫେରାଇ ନେଇ ଦେଖିଲା ବେଳକୁ ସୁନା ମା ହସ ମୁହଁରେ ଦେଖା ଦେଲା)

ସୁନା ମା—ବାବୁ କେତେ ବେଳୁ ଆସି ଏଠି ବସିଚନ୍ତି ?

ମଦନ—ଏଁ । ଏ କ'ଣ ଗୋଳକ ଧନ୍ଦା—

ସୁନା ମା—କୁଆଡ଼େ ଗସ୍ତରେ ଯାଇଥିଲ ପରା ? ଆମ ବାବୁ କହୁଥିଲେ···

ମଦନ—ଘର ଭିତରେ ଯାହାକୁ ଦେଖିଲି—ତୁ ତ ସେ ନୋହୁଁ ?

ସୁନା ମା—କାହାକୁ ଦେଖିଲ ମ ? ଆଉ ତ କେହି ଏଠିକି ଆସି ନାହାନ୍ତି !

ମଦନ—ଏଠିକି ଆସିବା କଥା ମୁଁ କହୁନ ! ଘର ଭିତରେ ସେ ନୂଆ ଲୋକଟି କିଏ ?

ସୁନା ମା—କିଏ ? ମନୁବାବୁ ?

ମଦନ—ମୁଁ କୋଉ ବାବୁଙ୍କ କଥା କହୁନ ।

ସୁନା ମା—ଆଉ କିଏ ? କାହା କଥା ବାବୁ କହୁଚ ମ ?

ମଦନ—ତୁ ମୋଟେ ବୁଝି ପାରୁନୁ କି ମୁଁ କାହା କଥା କହୁଚି ? ଏ ଘର ଭିତରେ କିଏ ସେ ନୂଆ ଲୋକଟି ଯାହାକୁ ମୁଁ ଚିହ୍ନି ନ ?

ସୁନା ମା—ଓ, ତାଙ୍କ କଥା ?······ହଁ ସିଏ ପରା ଆଇଚନ୍ତି ।

ମଦନ—ଆଉଚନ୍ତି ???

ସୁନା ମା—ଆଠ ଦିନ ହେଲା ଆଇଲେଣି ।

ମଦନ—ସୁନା ମା ! ଏ ଆଇନାରେ ତାଙ୍କୁ ଦେଖି ମୁଁ ଯେତିକି ଗୋଳକ ଧନ୍ଦାରେ ପଡ଼ିଥିଲି, ତା'ଠୁଁ ବେଶୀ ଗୋଳକ ଧନ୍ଦାରେ ତୁ ମତେ ପକେଇଲୁଣି । ମୁଁ କ'ଣ ପଚାରୁଚି, ଆଉ ତୁ ମତେ କ'ଣ କହୁଚୁ ?

ସୁନା ମା—ତମେ ଯାହା କଥା ପଚାରୁଚ—ମୁଁ ତାଙ୍କର କଥା କହୁଚି ପରା....ଆଠ ଦିନ ହେଲା ଆଇଚନ୍ତି ।

ମଦନ—(ବିରକ୍ତ ହୋଇ) ଆଲୋ ସେ କିଏ ?

ସୁନା ମା—(ଚାପା ଗଳାରେ) ସେ ଗୀତା ଦେଇ ପରା ?

ମଦନ—ଗୀତା ଦେଇ !!

ସୁନା ମା—ଆମ ବାବୁଙ୍କ ଧରମ ଭଉଣୀ ପରା ? ଚିହ୍ନି ନ ତାଙ୍କୁ ?

ମଦନ—(କ'ଣ ଯେମିତି ଭାବୁଥିଲେ) ତୁ ରହ ଟିକିଏ ।

ସୁନା ମା—ସମସ୍ତେ ତାଙ୍କୁ ଚିହ୍ନିଲେ··ଆଉ ତମେ ବାବୁ ଦେଶ ସାରା ଗସ୍ତ କରିବୁଲୁଚ.......ତାଙ୍କୁ ଚିହ୍ନି ପାରୁନ ?

ମଦନ—( ବୁଝି ନ ବୁଝିଲା ପରି ) ହୁଁ, ରଜୁବାବୁ କାହାନ୍ତି ?

ସୁନା ମା—କ'ଣ କହୁଛ କହିଲ ତ ନାହିଁ ବାବୁ ?

ମଦନ—ପଚାରୁଚ ପରା ରଜୁବାବୁ କାହାନ୍ତି ?

ସୁନା ମା—ନାଇଁମ······ତାଙ୍କ କଥାତ କହୁ ପଚାରିଲ ନାହିଁ ?

ମଦନ—ତୁ ମତେ ସେଥିପାଇଁ କୈଫିୟତ ମାଗିବୁ ? ଯାହାଙ୍କ କଥା ପଚାରୁଚ କହ-ରଜୁବାବୁ କାହାନ୍ତି

ସୁନାମା—ରଗୁଚ କାଇଁକି ମ ବାବୁ ! ବାବୁ ଘରେ ନାହାନ୍ତି, କୁଆଡ଼େ ବୁଲି ଯାଇଛନ୍ତି !

ମଦନ—ଆଚ୍ଛା ( ଯିବାକୁ ବାହାରିଲେ )

ସୁନାମା—ଚାଲି ଯାଉଚକି ବାବୁ ? ଘରେ ମା' ଅଛନ୍ତି ।

ମଦନ—ଥା'ନ୍ତୁ !

ସୁନା ମା—ମନୁବାବୁ ଆସିଛନ୍ତି, ଅପା ଅଛନ୍ତି ।

ମଦନ—ରଜୁବାବୁଙ୍କୁ କହିଦବୁ, ମୁଁ ଆସିଥିଲି ଫେରିଗଲି ପରେ ପୁଣି ଦେଖା ହବ !

ସୁନାମା—ସତେ ବାବୁ ଚାଲି ଯାଉଚ···ଚା ଖାଇନ, ପାନ ଖାଇନ··· ବାବୁ—ମଲା ! (ତା କଥା ସରିଲା ଆଗରୁ ମଦନ ଚାଲି ଯାଇଥିଲେ । ସୁନାମା ହସି ହସି ଫେରିଲା ବେଳକୁ ଗୀତା ଆସିଛୁ )

ଗୀତା—କ'ଣ ହେଲା । ହସୁଚୁ କାହିଁକି ?

ସୁନାମା—ନାଇଁ ସେ ବାବୁ ଆସିଥିଲେ !

ଗୀତା—ତୁ ହସୁଚୁ କାହିଁକି ?

ସୁନାମା—( ଗୀତାକୁ ଆଦର କରି ) ସତେ ଦେଇ, ତମକୁ ଦେଖିଲେ କାଇଁକି ଖୁସିରେ ମୋ ପେଟ ପୁରି ଉଠେ···

ଗୀତା—ସେ ବାବୁ ଗଲେଣି ତ ?

ସୁନାମା—ହିଁ ।

ଗୀତା—କିଏ, ସେ !

ସୁନାମା—ସିଏ ତଗ ମଦନ ବାବୁ, ଆମ ବାବୁଙ୍କ ସଙ୍ଗ ସେଇ ମତେ ଆଣି ଏଠି ରଖେଇ ଦେଇଚନ୍ତି !

ଗୀତା—ସେତିକ ବେଳୁ ମୁଁ ବହୁ ଥାକଟା ସଜାଡ଼ିବ ବୋଲି ବାହାରୁଚ ଯେ·····ଜଣ ଜଣ ହେଲ ଲୋକ ଆସୁଚନ୍ତି·····କିଛି କର ପାରୁନ ! ·····ହଁ, ସୁନାମା, ଏ ଫୁଲ ତୋଡ଼ାଟା ନେଇ ଯିବୁ ଟି

ସୁନାମା—ମାଁ'ଲୋ ! ଇଏ କାହାଫୁଲ । କିଏ ଆଣିଚ ! ମୁଁ କାହଁକି ନେବ ?

ଗୀତା—ସେଇ ଯୋଉ ବାବୁ ଆସି ନାହାଁନ୍ତି·····

ସୁନାମା—ମନୁବାବୁ ! ···ମ···ଲୋ ! ଏମିତ କିଛି ନ ଜାଣିଲା ଭଳି କ'ଣ କହୁଚମ । ସିଏ ତଗ ଆମବାବୁଙ୍କ ପିଇସି ପୁଅ ଭାଇ !

ଗୀତା—ହଁ ମ—ତାଙ୍କରି କଥା ମୁଁ କହୁଚ ! ଏ ଫୁଲତୋଡ଼ାଟି ନେଇ ଯା—ତାଙ୍କୁ ଦେଇ ଦବୁ !

ସୁନା ମା—ଫୁଲ ଦେଇ କହିବ—ଗୀତା ଦେଇ ଦେଇଛନ୍ତି ?

ଗୀତା—ନାଇଁମ·····ଏ ଫୁଲ ସେଇ ଆଣିଥିଲେ, ନୂଆଦେବୀଙ୍କ ପାଇଁ ନେଇ ଯା—

ସୁନାମା—ପାଗଳ ହେଲ ଦେଇ ! ଆମବାବୁ କି ମା' ଫୁଲର କେହି ଧାର ଧାରନ୍ତି ନାଇଁ । ସେ କାଇଁକି ଆଣିଥିଲେ ସେଇ ଜାଣନ୍ତି··· ଇଏ ଏଇଠି ଥାଉ—ସିଏ ତା'ଙ୍କର ବୁଝିବେ····· ( ସୁନାମା ଚାଲିଗଲା-ଫୁଲତୋଡ଼ାଟି ପାଇଁ ଗୀତା ଯେମିତ ଅସ୍ୱସ୍ତି ବୋଧ କରୁଥାଏ ସେଥିପ୍ରତି ଦୃଷ୍ଟି ନଦେଇ ପୁଣି ତା କାମରେ ଲାଗିଲା-ଆସିଲେ ଶ୍ୟାମବାବୁ )

ଶ୍ୟାମ—( ବାହାରୁ ) ଗୀତା—ଗୀତା—

ଗୀତା—କିଏ, ବାପା ? କେତେବେଳେ ଆସିଲ ?

ଶାମ—ଏଇ ଘଣ୍ଟାଏ ହବ ଫେରିଲି ମା !

ଗୀତା—ବସାକୁ ଯାଇନ ?

ଶାମ—ହଁ, ବସା, ହେଇ ଏଠିକି ଆସୁଚ ! ରାଜୁକାହାଁ ?

ଗୀତା—ବୁଲି ଯାଇଚନ୍ତି !

ଶାମ—ଶାନ୍ତି ?

ଗୀତା—ଘରେ ଅଛନ୍ତି । ( ଡ଼ାକଲା )ନୂଆବୋଉ.... ନୂଆବୋଉ

ଶାମ—ଶୁଣ 'ମା-ପାଖୁବଦନ ହେଲା ତତେ ଦେଖିନ

ଗୀତା—ମୁଁ ଏଠି ଖୁବ୍ ଭଲ ଅଛି ବାପା ! ଏଠି ସମସ୍ତେ ଭଲ ମଣିଷ ! ସୁନା ମା' ଅପା···ନୂଆବୋଉ··· ( ଶାମ ମୁହଁରେ ତୃପ୍ତିର ରେଖା ଦେଖାଦେଲା । ଆସିଲେ ଶାନ୍ତି ଓ ମନୋଜ )

ଶାନ୍ତି—ମଉସା ! ଗାଁକୁ ଯାଇଥିଲେ ପରା ? ଆଜି ଫେରିଲେ ?

ଶାମ—ହଁ ମା ! ଏଇ ଘଣ୍ଟାଏ ହେଲା ଫେରିଲି ।

ଶାନ୍ତି—ମନୁ !···ଶାମ ମଉସା···(ମନୋଜ ନମସ୍କାର କଲା) ଆମ ମନୁ ···ପିଉସିଙ୍କ ପୁଅ ··

ଶାମ—ଓ ··ଶୁଣିଚ, ବାବୁ ତମ କଥା—ଶୁଣିଚ—ଖୁବ୍ ଭଲ ପଢ଼ା ପଢ଼ି କରୁଚ !

ଶାନ୍ତି—ଗୀତାକୁ ଦେଖିବାକୁ ଆସିଲେ ପରା ମଉସା ?

ଶାମ—ମୋର ଆଉ ତାକୁ ଦେଖିବାର କ'ଣ ଅଛି ମା ? ମୁଁ ଜାଣେ ତା' ପାଇଁ ଏଇଟା ତା ରାଜୁଭାଇ—ଶାନ୍ତି ନୂଆବୋଉର ଘର ନୁହେଁ ତା ପରି ଅଭାଗିନୀ ପାଇଁ ଏ ଘର ସ୍ୱର୍ଗ ଭୂମି.... ଇଏ ତାର ସ୍ୱର୍ଗ···

(ଖୁବ୍ ଆନନ୍ଦରେ ତାଙ୍କ ଆଖିରେ ଲୁହ ଜମି ଆସୁଥାଏ ଧିରେ ଧିରେ ସେ ଯିବାକୁ ଲଗିଲେ)

ଶାନ୍ତ—ଆପଣ ଚାଲି ଯାଉଚନ୍ତି ?··· ରୁହନ୍ତୁ ! ଗୀତା···ଯା—ମଉସାଙ୍କ ପାଇଁ ଟିକେ······

ଶାମ—କ'ଣ ମା ! ଖାଇବାକୁ ଦବୁ ? ତୋ' ପାଖରେ ମୋର ଆଉ କ'ଣ ଅଭାବ ରହିଚି କହିଲୁ ମା ?······ଆଖି ଆଗରେ ଦେଖୁଚି ····ତୋ ପାଖରେ ଠିଆ ହୋଇଚି ଗୀତା···ତୋ ସାନ ଭଉଣୀଟି ପରି । ସେମିତି ଏଇଠି ତା'ର ଜନ୍ମ···ଏଇଠି ସେ ବଢ଼ିଚି ! ଏଠି ତମ ଦୁଃଖରେ ସେ ଦୁଃଖୀ ତମ ସୁଖରେ ସେ ସୁଖୀ··· ତା' ଗତ ଜୀବନର ସବୁ ଦୁଃଖ ସୁଖ ଏ ଘରର ଚାରି କାନ୍ଥ ସେ ପାଖରେ ହଜି ଯାଇଚି ! କାଲି ତା' ଜୀବନରେ ଯାହା ଘଟିବ, ତା'ର ବିଚାର କରିବ ତୁମେମାନେ....ଆଜି ଏଇ ମୋ ଆଖି ଆଗରେ ମୁଁ ଯାହା ଦେଖୁଚି···ସେଇଥିରେ ମୋ ପେଟ ପୁରି ଉଠିଚି ମା···ସେଇଥିରେ ମୁଁ ଜନ୍ମ ଜନ୍ମ ପାଇଁ, ତମ ପାଖରେ ଋଣୀ···ମୁଁ ଯାଉଚି ମା ! ରାଜୁ ଆସିଲେ କହିଦବୁ··· ମୁଁ ପରେ ଆସିବି ଦେଖା ହବ

ପ୍ରସ୍ଥାନ



## ଦ୍ୱିତୀୟ ଦୃଶ୍ୟ

( ମଦନ ଆସିଲେ । ବଶୁ ଯେମିତ ତାଙ୍କୁ କୋଉଠି ଅପେକ୍ଷା କରୁଥିଲା । ମଦନ ଆସିବା ମାତ୍ରେ ଆସି ତାଙ୍କ ପାଖରେ ଜୁଟିଗଲା)

ବଶୁ—ନମସ୍କାର ଆଜ୍ଞା ! (ମଦନ କେବଳ ଚାହିଁଲେ ଅର୍ଥପୂର୍ଣ୍ଣ ଦୃଷ୍ଟିରେ) ନମସ୍କାର !

ମଦନ—ମତେ କହୁଚ ?

ବଶୁ—ଆଜ୍ଞା !

ମଦନ—ମୋ ପାଖରେ କ'ଣ କାମ ଅଛି ?

ବଶୁ—ଆଜ୍ଞା ।

ମଦନ—ଅଫିସ କାମ 'ନା' ଘରୋଇ କାମ ?

ବଶୁ—କ'ଣ କହିଲେ ଆଜ୍ଞା ?

ମଦନ—ବୁଝି ପାରିଲ ନାହିଁ କ'ଣ କହିଲି ?

ବଶୁ—ଏଥିରେ ଆଜ୍ଞା ବୁଝିବାର କଥା···

ମଦନ—କିଛି ନାହିଁ ବୋଲି କହୁଚ ତ ?

ବଶୁ—ନାହିଁ ଆଜ୍ଞା ଅଫିସ କାମ କିଛି ନୁହେଁ ।

ମଦନ—ଆଉ ତା' ହେଲେ ଘରୋଇ କାମ ? ଘରକୁ ଆସ !··· ଏ ରକମ ?

ବଶୁ—ଶୁଣନ୍ତୁ ଆଜ୍ଞା······ଆପଣଙ୍କ ଘରକୁ କାହିଁକି ଯିବି ?··· ଘରେ ତ ମୋର କିଛି କାମ ନାହିଁ ।

ମଦନ—ହୁଁ, ତା' ହେଲେ ଅଫିସ ନୁହେଁ କି ଘରୋଇ ନୁହେଁ ।

ବଶୁ—ମୋର ପଦେ କଥା ଆଜ୍ଞା···(ଧୀର ସ୍ଥିର ଭାବରେ ମଦନ ପକେଟରୁ ସିଗ୍ରେଟ ବାହାର କରି ଟାଣିଲେ)

ମଦନ—ଟେବଷ୍ ତ ଲୋକ ଚିହ୍ନି ଜାଣ ?
ବଶୁ—(ଆତ୍ମ ପ୍ରସାଦ ସୂଚକ ହସ ହସୁଥାଏ)
ମଦନ—ଘର ଆଉ ଅଫିସ···ଏ ଦୁଇଟା ବାହାରେ ଯେ ଗୋଟାଏ ତୃତୀୟ ସ୍ଥାନ ଏ ଦୁନିଆରେ ଅଛି···
ବଶୁ—ଆଉ ସେଇଠି ଆମ ମାନଙ୍କର ଏମିତି ଭେଟା ଭେଟି ହୋଇଥାଏ ।
ମଦନ—ସା···ବାସ !···ଏମିତି ମୂରୁକେଇ ମୂରୁକେଇ ହସୁଚ ଯେ ?
ବଶୁ—ଚିହ୍ନି ପାରୁ ନାହାନ୍ତି ଆଜ୍ଞା ? (ପକେଟ୍‌ରେ ହାତ ମାରିଲା)
ମଦନ—କ'ଣ, ତାସ ମୁଠାଟି ?
ବଶୁ—(ହସି) ଏ ଥର ଆଜ୍ଞା ମୁଁ ଆପଣଙ୍କୁ ସାବାସ ଦେବ !
ମଦନ—ଏକ୍, ଦୁଇ, ତିନି କାରବାର ନୁହେଁ ତ ?
ବଶୁ—ଆମେ ଆଜ୍ଞା ଏତେ ଛଳେ ନ ଥାଉ ଫିଲସ···ରମ୍ମିଂ ଫିଲାସ୍···ଟିରଓ···
ମଦନ—ହୁହ, ହୁହ ମୁଁ ମନେ ପକାଏ । କୋଉଠି ତା' ହେଲେ ଭେଟିଥିବ ? ଭଗତ୍‌କେଜ୍, ବାଙ୍କା ବଜାର—ତିନି କୋଣିଆ ବଗିଚ୍ଚ ?
ବଶୁ—ସବୁଠି ଆଜ୍ଞା ?
ମଦନ—ହୁଁ, ତା' ହେଲେ ଏଥର ବାହାରି ଆସ !
ବଶୁ—(ବୁଝି ନ ପାରି) କ'ଣ ଆଜ୍ଞା ? କୋଉଠୁ ବାହାରି କୁଆଡ଼େ ଯିବ ।
ମଦନ—ଖୋଳ ଭିତରୁ ବାହାରି ଆସି ଖୋଲ୍ ଖୋଲି ଆରମ୍ଭ କରି ଦିଅ ।···ନାଁ କ'ଣ ?
ବଶୁ—ବଶୁ !
ମଦନ—ମୋ ନାଁ ଜାଣିଚ ?

ବଶୁ—ଜାଣିଚ ଆଜ୍ଞା ?

ମଦନ—ଆଜ୍ଞ ତା' ହେଲେ କୋଉ ଧାମରୁ ନିମନ୍ତ୍ରଣ ? ···ମତେ ଖବର ଦବାକୁ ଆସିଚ ତ ? ଦେଖ ଆଜ ଆଉ କାଲ ଏ ଦୁ'ଦିନ ମୁଁ କୁଆଡ଼େ ଯାଇ ପାରିବ ନାହିଁ ।

ବଶୁ—ମୁଁ ସେଥି ପାଇଁ ଆସିନି ଆଜ୍ଞା ।

ମଦନ—ଖୁବ୍ ତ ସହଜ ଲୋକ ତମେ ନୁହଁ ଦେଖୁଚି, ପକେଟ୍‌ରେ ତାସ୍ ମୁଠା···ରାସ୍ତାରେ ଭେଟା ଭେଟି—ଆଉ ତା' ହେଲେ କାହିଁକି ତୁମେ ଆସିଚ ?....ମୋ ପାଖରେ କି କାମ ?

ବଶୁ—ଆପଣ ଆଜ୍ଞା ବର୍ତ୍ତମାନ ଯୋଉ ବାବୁଙ୍କ ଘରୁ ଆସିଲେ ନାହିଁ···

ମଦନ—କ'ଣ, କ'ଣ—କ'ଣ କହିଲ ? ମୁଁ ତ ବର୍ତ୍ତମାନ କାହା ଘରୁ ଆସିନି ।

ବଶୁ—କି କଥା ଆଜ୍ଞା, ମୁହଁକୁ ଅନେଉଁ ଅନେଉଁ ଏମିତି ନାହିଁ କରି ଦଉଚନ୍ତି ?

ମଦନ—ଆଉ ତମେ ଏମିତି ମୋ ମୁହଁକୁ ଅନେଇ ଅନେଇ ମତେ "ହଁ" କରେଇ ଦବ ? ଦେଖୁଚ ପରା ମୁଁ ସିଧା ସେଇ ପାନ ଦୋକାନରୁ ଆସୁଚି !

ବଶୁ—ଆଜ୍ଞା ! ପାନ ଦୋକାନଟା ତ କାହାରି ଘର ନୁହେଁ ।

ମଦନ—ମାନେ ?

ବଶୁ—ସେ ପାନ ଦୋକାନ ପାଖରେ ସେଇ ଯୋଉ ଘରଟା··· ଯୋଉ ଘରୁ ଆପଣ ସେ ଦୋକାନକୁ ଆସିଲେ....

ମଦନ—କୁହ, କୁହ କ'ଣ କହୁଚ । ଶୁଣିବାର ଧୈର୍ଯ୍ୟ ମୋର ଅଛି ?

ବଶୁ—ସେ ଘରଟା କ'ଣ....ରାଜୁ ବାବୁଙ୍କର ?

ମଦନ—କୋଉ ରାଜୁ ବାବୁ ?

ବଶୁ—ସେଇ ରାଜୁ ବାବୁ···ଯିଏ ଆପଣଙ୍କ ସାଙ୍ଗରେ....

ମଦନ—କେବେ ହେଲେ ସେ ମୋ ସାଙ୍ଗରେ କୋଉ ତୀର୍ଥ ଦର୍ଶନକୁ ଯାଇ ନାହାନ୍ତି ! ସେ, ସେ କାହିଁର ନୁହଁନ୍ତି । ସେ ହଉଚନ୍ତି ଘର ଆଉ ଅଫିସ ବାଲା । ତାଙ୍କର ତୃତୀୟ ସ୍ଥାନ ନାହିଁ !

ବଶୁ—ମୁଁ ସେଇ କଥା କହୁଚି । ସେଇ ଯିଏ ଆପଣଙ୍କ ସାଙ୍ଗରେ କାଣ୍ଟନ୍‌ମେଣ୍ଟ ଅଫିସରେ କାମ କରନ୍ତି....ଇଏ ତାଙ୍କ ଘରଟି ?

ମଦନ—ମୋ ସାଙ୍ଗରେ କ୍ୟାଣ୍ଟନ୍‌ମେଣ୍ଟ ଅଫିସରେ ତିନ୍ ତିନ୍ ରାଜୁ ବାବୁ କାମ କରନ୍ତି....ତମେ କାହା କଥା କହୁଚ ?

ବଶୁ—ସେଇ ଯିଏ....

ମଦନ—ହୁଁ, କୁହ ସେଇ ଯିଏ....

ବଶୁ—ସେଇ ଯିଏ....

ମଦନ—ହୁଁ....

ବଶୁ—ସେଇ ଯିଏ....ଆମ ବସ୍ତି....

ମଦନ—ବୁଝିଲି, ତମ ବସ୍ତି···ଖୁବ୍ ନାମଜାଦା ବସ୍ତି ! କୁହ···ତମ ବସ୍ତି....

ବଶୁ—ସେଇ ଯିଏ ଆମ ବସ୍ତିର ସେଇ···

ମଦନ—ବୁଝିଲ, ତମେ ବର୍ତ୍ତମାନ ପୁରା ପୁର ତମ ଖୋଳରୁ ବାହାର ଆସିଚ ।....ମୁଁ ତମ କଥା ପୁରା ପୁରା ବୁଝି ପାରଚ ! ତମେ ବର୍ତ୍ତମାନ ସିଧା ସଳଖ ତମ ବସ୍ତିକୁ ଫେରିଯାଅ—

ବଶୁ—ଆଜ୍ଞା ?

ମଦନ—ଆଜ୍ଞା !!

ବଶୁ—ଆଜ୍ଞା, ଆପଣ ଏ କଥା କହୁଚନ୍ତି ?

ମଦନ—(ଦୂରକୁ ଲକ୍ଷ୍ୟ କରି) ରାଜୁ ଆସୁଚି !

ବଶୁ—ଏଁ କାହାନ୍ତି ? (ପଛକୁ ଚାହିଁ) ମୁଁ ଯାଉଚି ଆଜ୍ଞା, ପରେ ଦେଖା ହବ ! (ଚାଲିଗଲା ପରେ ରାଜୁର ପ୍ରବେଶ)

ରାଜୁ—ଆରେ ମଦନ ବାବୁ ? ଏଠି କାହିଁକି ଠିଆ ହେଇଚ....

ମଦନ—ଯେ ପର୍ଯ୍ୟନ୍ତ ରାସ୍ତା ଅବରୋଧ ନ କରିଚ, ସେ ପର୍ଯ୍ୟନ୍ତ ଠିଆ ହବାରେ ଦୋଷ କୋଉଠିଁ ?

ରାଜୁ—ସେ ଲୋକଟା କିଏ ?

ମଦନ—ଚିହ୍ନିଚ ତାକୁ ?

ରାଜୁ—ଚିହ୍ନିଲା ଭଳି ଠିକ୍ ଚିହ୍ନିନ ! କିନ୍ତୁ ଏକାବେଳକେ ବୋଧହୁଏ ଅଚିହ୍ନା ନୁହେଁ ।

ମଦନ—ହୁଁ :

ରାଜୁ—ସେ ଏଠିକି କାହିଁକି ଆସିଥିଲା ?

ମଦନ—ତା'ର କୈଫିୟତ ମୁଁ ଦେବି ?

ରାଜୁ—ଠିକ୍ କଥା ! ଟୁର୍‌ରୁ କେବେ ଫେରିଲ ?

ମଦନ—କାଲି !

ରାଜୁ—ଆସ । ଘରକୁ ଆସ । ଏଠି କାହିଁକି ଠିଆ ହେଇଚ ?

ମଦନ—ଘରୁ ତ ଆସିଲିଣି ! ସିଗ୍ରେଟ୍···ଅଛିରେ ମୋ ପାଖରେ ନାହିଁ ···ତମ ପାଖରେ....

ରାଜୁ—ମୋ ପାଖରେ ବି ନାହିଁ ....ଚାଲ ଘରକୁ ଚାଲ ।
ମଦନ—କହୁଚ ପରା ତମ ଘରୁ ଯାଇ ଫେରିଲଣି ।
ରାଜୁ—ମତେ ନ ପାଇ ଫେରି ଆସିଲ ତ ?
ମଦନ—ହଁ !

ରାଜୁ—ସେ ଦିନ ଯେମିତି ତୁମେ ଆସିଥିଲ । ମୁଁ ଘରେ ନ ଥିଲି··· କପେ ଚା' ନ ଖାଇ କୁଆଡ଼େ ଫେରିଗଲ । ଆଜି ତ ଏବେ ମୁଁ ଆସିଲଣି—ଆସ ।

ମଦନ—ଆଗେ ପାନ ଦୋକାନକୁ ଆସ । ସିଗ୍ରେଟ ଖାଇବା ।
ରାଜୁ—କି ଆଶ୍ଚର୍ଯ୍ୟ କଥା ! ଘରେ ସିଗ୍ରେଟ ଅଛି । ପାନ ଦୋକାନରୁ ସିଗ୍ରେଟ କିଣିବା କାହିଁକି ?

ମଦନ—ଅନେକ ସମୟରେ ଘର ଥାଇ ବି ଲୋକ ବାହାରେ ପାଦ ଥୋଇଥାଏ···ଆସ । (ଦୁହେଁ ଚାଲିଗଲେ)



# ତୃତୀୟ ଦୃଶ୍ୟ

(ରାଜୁର ଘର । ସମସ୍ୟ-ରାତିର ପ୍ରଥମ ପ୍ରହର, ଶାନ୍ତ ବସିଛି । ମନ୍ଦନାଳ ଅନ୍ୟମନସ୍କ ଭାବରେ ପଦଚାରଣ କରୁଛି)

ମନୁ—ହଁ ନ ଆସିବି···ମୁଁ କାଲି ଯିବ ।

ଶାନ୍ତ—କାଲି ଯିବ ?

ମନୁ— ହଁ ! କାଲି ସକାଳୁ ଯିବ !

ଶାନ୍ତ— କାହିଁ କି ?

ମନୁ—କାହିଁ କି ଆଉ କ'ଣ । ପରୀକ୍ଷା ସରିଲା··ନିଜର ପ୍ରିୟ ଲୋକ ବୋଲି, ତମ ପାଖରେ ଆସି ଦି' ଚାରି ଦିନ ଛୁଟି କଟେଇଲି । ତା' ପରେ ତମ ଆତିଥ୍ୟର ମଧୁ-ସ୍ମୃତି ନେଇ ମୋ' ବାଟରେ ମୁଁ ଯିବ !

ଶାନ୍ତ—କୋଉଠିକି ଯିବ ?

ମନୁ— ଏ ପ୍ରଶ୍ନ ବି କ'ଣ ପଚାରି ହୁଏ ?

ଶାନ୍ତ—ଲୋକ ଘର ଛାଡ଼ି ବିଦେଶରେ ବର୍ଷେ ଅଧେ ରହିଲେ ବୋଧହୁଏ ଏମିତି ବନେଇ ଚୂନେଇ କଥା କହି ପାରେ ?

ମନୁ—ମାନେ ?

ଶାନ୍ତ— ଏଇଠି ରହି ଆଇ, ଏ, ପଢ଼ିଲି-ବି, ଏ, ପଢ଼ିଲି ! ସେତେବେଳେ ଆମେ ଥିଲୁ ଘରର ଲୋକପରି....! ବର୍ଷ ଦି' ଟା ଏଲାହାବାଦରେ ପଢ଼ି ଆସିଲା ପରେ ଆମେ ହୋଇଗଲୁ ପ୍ରିୟ ଲୋକ ? · ସେତେବେଳେ ଏଇଟା ଥିଲା ନିଜର ଘର ପରି··· ବର୍ତ୍ତମାନ ହେଲା ଛୁଟି କଟେଇବାର ହୋଟେଲ ?

ମନୁ—ଏଇ ଥର ଏକା ତମେ ମତେ କଥା କୁହା ଶିଖେଇଲ ନୂଆବୋ !

ଶାନ୍ତ—କାହିଁକି, ତମେ କହୁନ ! ଏ ଘରଟାକୁ ଗୋଟାଏ ହୋଟେଲ କି ଧର୍ମଶାଳା କହିଲେ କ'ଣ ଭୁଲ ହବ ?

ମନୁ—ନୂଆବୋ !......

ଶାନ୍ତ—(ହଠାତ୍ ବିଚଳିତ ହୋଇ ପଡ଼ି) ନା ମନୁ, ମୁଁ ଭୁଲ କହିଚି.... ମୋର ଭୁଲ ହୋଇଚି—ନିଜ ଘର ସଂସାରକୁ ଏମିତି ଆକ୍ଷେପ କରିବାର ଅଧିକାର କାହାରି ନାହିଁ ! ଇଏ ଆତ୍ମହତ୍ୟା ଭଳି ପାପ ......(ଶାନ୍ତ ଆଖିରେ ଲୁହ)

ମନୁ—ତମେ କାନ୍ଦୁଚ ନୂଆବୋ ?

ଶାନ୍ତ—ମୋର ଗୋଟାଏ କଥା ରଖିବ ମନୁ ? ମୋର ଗୋଟାଏ ଉପକାର କରିବ ?

ମନୁ—ନୂଆବୋ ?

ଶାନ୍ତ—ତମେ କ'ଣ କାଲି ସତରେ ଏଠୁ ଚାଲିଯିବ ?

ମନୁ—ଏଇ ସାମାନ୍ୟ କଥାଟା ପାଇଁ....

ଶାନ୍ତ—ତମ ପାଇଁ ସାମାନ୍ୟ ହୋଇପାରେ....କିନ୍ତୁ ମୋ ପାଇଁ ନୁହେଁ ! ମୋ କଥା ରଖି ମନୁ···ତମେ ଯାଅ ନାଇଁ !

ମନୁ—ବେଶ୍ । ମୁଁ ଯିବ ନାଇଁ !

ଶାନ୍ତ—ହଁ ମନୁ, ତମେ ଯାଅ ନାଇଁ ! ତମେ ଚାଲିଗଲେ ଏଠି ମୋ ନିଶ୍ୱାସ ବନ୍ଦ ହୋଇଯିବ—ପଦେ କଥା କାହାକୁ କହିବାର କ୍ଷମତା ହୁଏତ ମୋର ରହିବ ନାହିଁ ।....ମୋ ନିଜ ଘରେ—ମୋର ଏଇ ଆଠ ବର୍ଷର ପରମ-ତୀର୍ଥ ଘର-ସଂସାର ଭିତରେ ମୁଁ ପରବାସୀ ହୋଇ ରହିଯିବି ।

ମନୁ— ସେ' ତୁମେ କି ଅବସ୍ଥାରେ ଆସି ପହଞ୍ଚିଲଣି ନୂଆବୋ ?

ଶାନ୍ତ—ଅବସ୍ଥା ?

ମନୁ—ସବୁ ଭୁଲି ହସି ହସି ଏ ସଂସାର ତମେ ଚଳେଇ ନବାକୁ ଚାହଁ—କିନ୍ତୁ ତମେ ନ ଚାହିଁଲେ ବି ତମ ମୁହଁର ସେ ହସକୁ ନଷ୍ଟ କରିଦଉଛି, ତମ ଆଖିର ଏ ଲୁହ । ଅଥଚ ଏ ଲୁହ—ଏ ଦୁର୍ବଳତା ତମେ ବାହାରେ ପ୍ରକାଶ କରିବାକୁ ଚାହଁନା । ହସ-କାନ୍ଦର ଏ ଦ୍ୱନ୍ଦ୍ୱ ଭିତରେ ତମେ ଚଳିବ କେମିତି ନୂଆବୋ ? କ'ଣ ହବ ତମର ଅବସ୍ଥା ? (ଶାନ୍ତ ମୁହଁରେ କଥା ନାହିଁ, ହାତ ପାପୁଲିରେ ମୁହଁ ରଖି କାନ୍ଦୁଥାଏ । ଭିତରୁ ଡାକ ଡାକ ଆସିଲା ଗୀତା ମୁହଁରେ ବେଶ୍ ଫୂର୍ତ୍ତିର ହସ)

ଗୀତା—ନୂଆବୋ...ନୂଆବୋ...(ଗୀତା ମନୋଜକୁ ଦେଖି ଟିକଏ ଅଟକି ଯାଇ—ଶାନ୍ତ ପାଖକୁ ଆସିଲା । ଗୀତାକୁ ଦେଖି ଶାନ୍ତ ନିଜର ସହଜ ଅବସ୍ଥାକୁ ଫେରି ଆସିଲା)

ଗୀତା—( ହସିହସି ) ସୁନା ମା କଥା ଶୁଣିଲଣି ନୂଆବୋ ?

ଶାନ୍ତ—କ'ଣ ?

ଗୀତା—ଆଜି ଶିବ ଚତୁର୍ଦ୍ଦଶୀ...ଅପାଙ୍କର ଗହମଛତୁ ଖାଇବାର କଥା ।

ଶାନ୍ତ—ସେ କଥା ସୁନାମା ବଝିବ ।

ଗୀତା—ସେଇ କଥାତ କହୁଚି,...ଅପା କୁଆଡ଼େ ବଜାର କଣାଛତୁ ଖା'ନ୍ତି ନାହିଁ । ତାଙ୍କପାଇଁ ଘରେ ଛତୁ ତିଆରି ହୁଏ ! ( ଶାନ୍ତର ନିରୁତ୍ସାହ ଭାବ ଲକ୍ଷ୍ୟକରି ) ଶୁଣୁଚଟି ନୂଆବୋ ?

ଶାନ୍ତ—ହଁ

ଗୀତା—ସୁନାମା ଆଜି ଗହମ ଭାଜି ଛତୁ କରିବାକୁ ଭୁଲି ଯାଇଛି । ଏଇନେ ମନେ ପଡିବାରୁ କହୁଚି କ'ଣ ଜାଣ ନୂଆବୋ... ?

ଶାନ୍ତ—କ'ଣ ?

ଗୀତା—ଘରେ ଅଟା ଅଛି...ତାକୁ ଭାଜି ଛତୁକରି ଦବ,

ମନୁ—କ'ଣ ହେଲା ? ଅଣ୍ଟାକୁ ଭାଜି ଛତୁ କରିଦବ ?

ଗୀତା—ହଁ ପରା ! କହୁଚ—ଗହମ ଭଜାହୋଇ ଚୁରା ହେଲେତ ଛତୁ ହୁଏ । ···ଆଗରୁ ଗହମ ଚୁରା ହେଇ ଅଟ ହେଇଚ··· ତାକୁ ଭାଜିଦେଲେ କ'ଣ ଛତୁ ହେବ ନାଇଁ ?

(କଜେ କହୁ କହୁ ହସୁଥାଏ । ତା କଥା ଶୁଣି ଶାନ୍ତ ଓ ମନୁ ମଧ୍ୟ ହସିଲେ। ଆସିଲା ସୁନାମା )

ସୁନାମା—କାହିଁକି ମ ? କ'ଣ ମୁଁ ନାକରା କଥାଟାଏ କହିଲି ଯେ···ମତେ ଏମିତି ହସରେ ଉଡ଼େଇ ଦଉଚ ? ଆଜିତ କାଲରୁ ଅଟା ଚୁରା ହେଇ ଆସିଚ । ···ତାକୁ ଟିକଏ ଉଷୁମେଇ ଦେଲେ ହବନାହିଁ ?

ଗୀତା—ଶୁଣୁଚଟି ନୂଆବୋଉ ତା' କଥା ?

ସୁନାମା—ନୂଆବୋଉ କ'ଣ ଶୁଣିବେ ମ ? ଏଠି ତମେ ଆଗ, ନା ମୁଁ ଆଗ ? ନୂଆବୋଉ ତମକଥା ଶୁଣିବେ—ମୋ କଥା ଶୁଣିବେ ନାଇଁ

ଶାନ୍ତ—ସୁନାମା !

ସୁନାମା—ରାତି ଆସି ପାହାଡ଼ରେ ହେଲାଣି ମା— ରୋଷେଇ ଅଧା ହେଇନା। ······ମତେ ଏଇନେ ବେଳ ଅଛି ନା···ମୁଁ ଗହମ ଭାଜି-ଚୁରି···ଛତୁ କରି ଥୋଇଦେବି ??

ଗୀତା—ତତେ ବେଳ ନ ହେଲେ ଥିଲା ମୁଁ କରିଦଉଚ ଅପା ଯେମିତି ଲୋକ—ଦେଖିଲନି ନୂଆବୋଉ, ମୟୂରପଙ୍ଖାଟାଏ ଭାଇ ଆଣିଦେଇ ନାହାନ୍ତି ବୋଲି, ଭାଇଙ୍କୁ କାଲି କ'ଣ ନାଇଁ କ'ଣ କହିଦେଇ ଗଲେ ?

ସୁନାମା—ଭାଇଙ୍କି କହିଲେ ବୋଲି ଭାଇ ତମ ଆଗରେ ଫେରାଦ ହଉଥିଲେ ?

ଗୀତା—ଏ ସୁନାମା କଥା ଶୁଣି, ମଣିଷ ହସିବ, ନା କାନ୍ଦିବ ? ଭାଇଙ୍କ କଥା ପଡ଼ୁଚ ?···ପଡ଼ୁଚ ଅପାଙ୍କ କଥା ! ତୁ ଚାଲିଲୁ··· ମୁଁ ଗହମ ଭାଜ ଚୁରିଦେବ ।

ସୁନାମା—ହଉ ଆସ !···ସେ ମହଣେ ଓଜନ ଚକ ତେମେ କେମିତି ବୁଲେଇବ, ମୁଁ ଦେଖିବ !

ଗୀତା—ତୋ ଦେହରେ ମାଉଁସ ଲାଗିଚ ବୋଲି ଭାବଚୁ ତୁ, ପାରିବୁ···ମୁଁ ପାରିବ ନାଇଁ ? ଚାଲ-ଦେଖିବୁ ଚାଲ···( ସୁନାମା ଚାଲିଗଲା । ଗୀତା ଯାଉ ୨ ଫେର ପଡ଼ି )ନୂଆବୌ, ଭାଇ ଆଜ ଅଫିସରୁ ଫେରି ଦୁଧ ପିଇ ନାହାଁନ୍ତି ।-- ମୁଁ ତ ସେତେବେଳେ ତମ ବ୍ଲାଉଜରେ ଫୁଲ ପକାଉ ଥିଲି ।···ତମେ ବି ତାଙ୍କୁ ମନେ ପକେଇ ଦେଲନାଇଁ ....ଦୁଧରେ ଚିନିପଡ଼ି ସେମିତି ଥୁଆ ହୋଇଚ ମୁଁ ଗହମ ଭାଜିବାକୁ ଯାଉଚି···ଭାଇ ଏଇନେ ଫେରିଲେ ତାଙ୍କୁ ପିଇବାକୁ ଦବ । ( ଗୀତା ଚାଲିଗଲା । ମନୁ ଓ ଶାନ୍ତ କିଛି ସମୟ ପାଇଁ ନୀରବ ରହିଲେ )

ଶାନ୍ତ—ଆଖି ଆଗରେ ସବୁତ ଦେଖୁଚ ମନୁ....ସବୁତ ଶୁଣୁଚ ! କହି ପାରିବ ତୁମେ....କ'ଣ ମୋର କର୍ତ୍ତବ୍ୟ ?

ମନୁ—ମୁଁ ଆଶ୍ଚର୍ଯ୍ୟ ହଉଚି ନୂଆବୌ ! ଏତେବଡ଼ ଗୋଟିଏ ଦୁର୍ଘଟଣା ଘଟିଲା....ଅଥଚ ଗୀତାର ବର୍ତ୍ତମାନ ଅବସ୍ଥା ଦେଖି, କେହି କେବେ ବିଶ୍ୱାସ କରିବନି ଯେ, ଏ ସେଇ ଝିଅ ! ଯେମିତି ତାର କିଛି ହୋଇନି !

ଶାନ୍ତ—ସେ ଉଦ୍ଦେଶ ତମ ଭାଇ ତାକୁ ଦେଇଚନ୍ତି···ଆଉ ସେ ତାକୁ ଅକ୍ଷରେ ଅକ୍ଷରେ ପାଳିଚ ! ସେ ଜାଣେ, ଏ ଘରେ ହୋଇଚ ତା'ର ନୂଆ ଜନ୍ମ !

ମନୁ—ତାକୁ ଦେଖିଲେ....ତା'ର ଇତିହାସ ଶୁଣିଲେ···ଅତି ନିର୍ମମ ଲୋକ ମନରେ ମଧ ତା' ପାଇଁ ଦୟା ଦେଖା ଦବ ।

ଶାନ୍ତ—ମୁଁ ତ କହୁଚି ମନୁ ! ମୁଁ ତାର ପର ସ୍ତ୍ରୀ ଜନ୍ମ ପାଇଚି-ତା' ପାଇଁ ମୋ ହୃଦୟରେ ଦୟା-ମାୟା-ସ୍ନେହ ମମତା ସବୁ ରହିଚି ! କିନ୍ତୁ···କିନ୍ତୁ ଏ ପଡ଼ା ସାରା ସମସ୍ତେ ଯଦି ତା' କଥା ଆଲୋଚନା କରନ୍ତି—ତାକୁ କେନ୍ଦ୍ର କରି ଯଦି ବେନାମୀ ଚିଠି ଆସେ—

ମନୁ—ବେନାମୀ ଚିଠି ?

ଶାନ୍ତ—ହିଁ, ଆଜ ଡାକରେ ମୋ' ପାଖକୁ ଆସିଚି ।

ମନୁ—କି ଚିଠି ନୂଆବୋ ? କ'ଣ ଲେଖା ଥିଲା ?

ଶାନ୍ତ—ତମ ଭାଇଙ୍କୁ ଏ କଥା କହିନି··କିନ୍ତୁ ତମକୁ କହୁଚି । ଆମର ବିବାହ ହବାର ଆଠ ବର୍ଷ ହେଇଗଲା ! ଏ ପର୍ଯ୍ୟନ୍ତ ମୁଁ ସନ୍ତାନ ମୁହଁ ଦେଖିଲି ନାହିଁ !···ସେ ଆଶା ହୁଏତ ମୋର ଆଉ ନାହିଁ, ··ସେଇଥି ପାଇଁ କୁଆଡ଼େ ତମ ଭାଇ······

ମନ—ନୂଆବୋ ! ଏ କଥା ତମେ ବିଶ୍ୱାସ କରି ପାରୁଚ ? ଭାଇଙ୍କୁ ଏ ଦୋଷରେ ତମେ ଦୋଷୀ କରିଇ ପାରିବ ?

ଶାନ୍ତ—ତାଙ୍କୁ ମୁଁ କ'ଣ ଦୋଷ ଦେବି ମନୁ ? ତାଙ୍କରି ଆଦେଶ ମାନି ଏ ପର୍ଯ୍ୟନ୍ତ ଚଳି ଆସିଚି ! ସେଇଥି ପାଇଁ ତ ମୁଁ ଗୃହେଁ ଏ ସବୁ କଥାକୁ ହସି ହସି ଉଡ଼େଇ ଦେବି···! ନ ପାରିଲେ କାନ୍ଦି କାନ୍ଦି ନୀରବରେ ସବୁ ସହିଯିବି ! (ଭିତରୁ ପାଟି କରି ଆସିଲେ ଅପା)

ଅପା—କୁଆଡ଼େ ଗଲା ରାଜୁ ?....ଶାନ୍ତ ! ରାଜୁ କୁଆଡ଼େ ଗଲା ?

ଶାନ୍ତ—କୁଆଡ଼େ ଯାଇଚନ୍ତି···ଏ ଯାଏ ଫେରି ନାହାନ୍ତି ତ ।

ଅପା—ହଉ, ସେ କେତେ ବେଳେ ଫେରୁଚ ଫେରୁ ! ଆଜ ଏଇ ରାତ୍ର ରାତ୍ର ସେ ମତେ ନେଇ କୋଉଠି ଛାଡ଼ ଦେଇ ଆସୁ !... ମୋର ଘର ଦ୍ୱାର ନ ଥିଲେ ତ ପୃଥ୍ୱୀ ବଡ଼ ଦାଣ୍ଡ ଅଛି... ସେଇଠି ନେଇ ସେ ମତେ ଛାଡ଼ ଦେଇ ଆସୁ ।

ଶାନ୍ତ—କ'ଣ ହେଇଚ ଅପା ?

ଅପା—ତୁ ସିନା ପରଘରୁ ଆସିଚୁ ସେ ଆଖିରେ ଦେଖିନୁ... ହେଲେ ସବୁ ତ ଶୁଣିଚୁ ! ବାର ଦିନର ହେଇଥିଲା....ମା' ମଲା, ସେଇ ବାର ରାତ ଦିନ ମୁଁ ତାକୁ ମୋ' କୋଳକୁ ଉଠେଇ ନେଲି, ତା' ପାଇଁ ଯାହା କହନ୍ତୁ, ମୁଁ ନର୍କ ଯାଇଚି ।...ସଂସାର ଜାଣେ, ରଜୁ ମୋର ଭୂଲୁଚ ନୁହେଁ—ମୋ ପୁଅ, ଆଜ ତାର ପାଇଁ ମୋର କାପ୍ଟା ନଷ୍ଟ ହବ ?

ଶାନ୍ତ—ସେ କ'ଣ କଲେ ଅପା ?

ଅପା—ସେ କଉ ନାହିଁ ତ, ଆଉ କିଏ କରିଚ ? ଗୋଟାଏ ପର ଝିଅକୁ ଆଣି କାହିଁକି ସେ ଘରେ ପୂରେଇଚ ?

ଶାନ୍ତ—ଅପା !!!

ଅପା—କୁଆଡ଼େ କାହା ସାଙ୍ଗରେ ରାତ ଅଧରେ ଘରୁ ପଳେଇ ଯାଇ କୋଉଠି କ'ଣ କଲା, ଠାକୁରେ ଜାଣନ୍ତୁ—

ଶାନ୍ତ—(ବାଧା ଦେଇ) ଅପା...ତମ ଗୋଡ଼ ଧରୁଚି ଅପା ...ଗୀତା ସେ ଘରେ ଅଛି...କାଳେ ଶୁଣିବ ।...ତମେ ଏ ସବୁ କଥା କୁହ ନାଇଁ (ରଜୁ ବାହାରୁ ଆସିଲା)

ରଜୁ—କ'ଣ ହେଇଚ ? (ସମସ୍ତେ ନୀରବ)....କେହି କଥା କହୁ ନାହାନ୍ତ ଯେ ?... କ'ଣ ହେଇଚ...ଏଁ ! ଅପା କାନ୍ଦୁଚ କାହିଁକି ?

ଶାନ୍ତ—ନାଇଁ ମ, ସେ କାନ୍ଦବେ କାହିଁକି...! ଚାଲ ଅପା ଭିତରକୁ ଚାଲ ।

ରାଜୁ—କ'ଣ ହେଇଚ ଅପା ?

ଅପା—ଶୁଣିବୁ କ'ଣ ହେଇଚ ?

ରାଜୁ—(ଯେମିତ ଡରିଯାଇ) କ'ଣ ?

ଅପା—ତୋ' ଘରେ ଆଉ ମୁଁ ରହିବ ନାହିଁ ।

ରାଜୁ—ମୋ ଘର ? ଏଇଟା ତ ମୋ' ଘର ବୋଲି, ମୁଁ କେବେ ଭାବିନି । ତୋ'ର ଟଙ୍କାରେ ତୁ ମୋ' ପାଇଁ ଏ ଘର କରି ଦେଇଚୁ···ମୋ ପାଇଁ ତୁ ତୋ'ର ସର୍ବସ୍ୱ ଦାନ କରିଚୁ....ଆଜି ଏ କଥା କହୁଚୁ କାହିଁକ ?

ଅପା—କହୁଚ···ତୁ ମତେ ଆଣି ଏ ଅବସ୍ଥାରେ ପକେଇଚୁ ବୋଲି ?

ରାଜୁ—କ'ଣ ହେଇଚ କହ ?

ଅପା—ଆଜି ମୋର ଶିବ ଚତୁର୍ଦ୍ଦଶୀ ଉପବାସ ।··· ମୁଁ ମହାଦେବଙ୍କ ନାଁରେ ଯୋଉ ନୈବେଦ୍ୟ କରିବି ତାକୁ ପୁଣି "ଗୀତା" ଛୁଇଁବ ?

ରାଜୁ—ଅପା !

ଅପା—ତା'ର ମାଆ ଗତର କ ଠିକଣା ରହିଚ ବୋଲି ତୁ ଏ କଥା ମତେ କହୁଚୁ ?

ରାଜୁ—ଗୀତା କୁଆଡ଼େ ଗଲା ଶାନ୍ତ ? ତା'ର କ ଦର୍କାର ଥିଲା ଏ ସବୁ କାମ କରିବାକୁ ?

ଅପା—ଘରେ ଯେତେ ବେଳେ ଲୋକଟାଏ ଅଛି···ତାକୁ ଏବେ ଜଗି ବସିବ କିଏ ?

ରାଜୁ—ତୁ ତା' ହେଲେ କ'ଣ କହୁଚୁ ଯେ ?

ଅପା—ମୋର କଛି କହିବା ଦରକାର ନାହିଁ । ତୋ ମତ ଗତ··· ତୋ ମନର କଥା ସବୁ ମୁଁ ଜାଣିଲିଣି···

ରାଜୁ—(ଟିକିଏ ଜୋରରେ) ଅପା !

ଅପା—ତୁ ମନେ ଡରୁଚୁ ? ହେଲେ ସେ ଯାଏ କଥା ଯିବ କାହିଁକି ? କହିଲ ପରା···ତୁ ମତେ କୋଉଠି ନେଇ ଛାଡ଼ି ଦେଇଆ । ମୁଁ ତୋ' ଘରେ ଆଉ ରହିବି ନାହିଁ ।

ରାଜୁ—ଅନ୍ୟ କଥାରେ, ତୁ କହିବାକୁ ଚାହୁଁ, ଗୀତା ଆଉ ଏ ଘରେ ରହି ପାରିବ ନାହିଁ ?

ଅପା—ହଁ ମୁଁ ସେଇଆ କହୁଚି....! ଏ ଘରେ ଗୀତା ରହିବ, ନାହିଁ ତ ମୁଁ ରହିବି....ଏ ଦୁ' କଥାରୁ ଗୋଟାଏ କଥା ତତେ କରିବାକୁ ହେବ ! (ରାଜୁର ବାକ୍‌ଶକ୍ତି ଯେମିତି ଲୋପ ହୋଇଗଲା । ସମସ୍ତେ ନୀରବ । ଟିକିଏ ପରେ ହାତରେ ଦୁଧ ଗ୍ଲାସ ଧରି ଆସିଲା ଗୀତା)

ଗୀତା—(କହୁ କହୁ ଆସିଚି) ଭାଇ ଆସିଲେଣି ନା ଅପା ?···
(ଏ ଅସ୍ୱାଭାବିକ ପରିସ୍ଥିତି ଦେଖି ତା' ମୁହଁର ପ୍ରଫୁଲ୍ଲତା ଯେମିତି କେତେ-କାଂଶରେ ମଉଳି ଗଲା !....ରାଜୁ ମୁହଁରେ କିନ୍ତୁ ସଙ୍ଗେ ସଙ୍ଗେ ଫୁଟି ଉଠିଲା ହସ)

ରାଜୁ—କ'ଣ ଗୀତା ?

ଗୀତା—ଆଜି ଅଫିସରୁ ଫେରି ତମେ ଦୁଧ ପିଇନ ! ଦୁଧ ସେମିତି ଥୁଆ ହୋଇଚି । ଏଇନେ ପିଇବ ତ ?

ରାଜୁ—ଏଁ ! ହଁ—ଆଣ ! (ଗୀତା ଚାଲିଗଲା)

ଅପା—ମୋ' କଥାର ଜବାବ ଦେଲୁ ନାହିଁ ତ ରାଜୁ ?

ଶାନ୍ତ—ତମେ ଚାଲ ଅପା ତେଣିକି ଚାଲ··ଆସ ମନୁ ! (ଅପା, ଶାନ୍ତ ଓ ମନୋଜ ଚାଲିଗଲେ ଟିକିଏ ପରେ ହାତରେ ଦୁଧ ଗ୍ଲାସ ଧରି ଗୀତା ଆସିଲା )

ଗୀତା—କ'ଣ ହେଉଚ ଭାଇ ?

ରାଜୁ—କାହିଁ, କହ୍ନି ହେଉନ ତ !

ଗୀତା—ଅପା ଏମିତ ରାଗି କରି ଚାଲିଗଲେ ?

ରାଜୁ—ତୁ ସେଥିରୁ କ'ଣ ପାଇବୁ ? ଆଜ ଯାହା ପଢ଼ା ଦେଇଥିଲି କରିଚୁ ?

ଗୀତା—ହଁ !

ରାଜୁ—ଚାଲ...ମୁଁ ଦେଖିବି, ଚାଲ ! (ରାଜୁ ଦୁଧ ପିଉଥାଏ ଗୀତା ମୁହଁରୁ କନ୍ଥ ସନ୍ଦେହର ଗ୍ଲାନ୍ଥା ଲଭ ନ ଥାଏ)



## ଚତୁର୍ଥ ଦୃଶ୍ୟ

(ରାଜୁ ଘରେ ଅଳନ୍ଦ । କଥାବାର୍ତ୍ତା ହେଇ ଆସିଲେ ଅପା ଓ ସୁନାମା)

ଅପା—ତୁ ଦେଖିଚୁ ସୁନାମା ?

ସୁନାମା—ହଁ ଟଗୋ ଅପା....ମୁଁ ଦେଖିଚି !

ଅପା—ତୁ ନିଜେ ଦେଖିଚୁ ?

ସୁନାମା—ମଲି ! ଆଉ କିଏ ଦେଖିଥିଲେ ମୋର କ'ଣ ଯାଉଥିଲା ? ମୁଁ ନିଜେ ଦେଖିଚି ବୋଲି କହୁଚିନା ?

ଅପା—ରାଜୁ ସେଇଟାକୁ ନେଇ ଗୋଟାଏ ରିକ୍ସାରେ ଗଲା ?

ସୁନାମା—କଥା ଆଉ କ'ଣ କି ? ଦିହେଁ ଦିଟା ରିକ୍ସାରେ ଯାଇଥିଲେ କାହାର କ'ଣ ଯାଉଥିଲା ? ଗୋଟାଏ ରିକ୍ସାରେ ଜାକି ଜୁକି ହୋଇ ବସି ଗଲେ !

ଅପା—ଶାନ୍ତ କୁଆଡେ଼ ଗଲା ?....ଆଲୋ ଶାନ୍ତ ?

ସୁନାମା—ତାଙ୍କୁ କାଇଁକି ଡାକୁଚ ? ସେ ଏ କଥା ଦେଖିଚନ୍ତି ନା ଜାଣିଚନ୍ତି ?

ଅପା—କିଛି ତ ଦେଖିବ ନାହିଁ କି ଜାଣିବ ନାଇ—ଆଉ ଘର କରିବ କେମିତି ?

ସୁନାମା—ମଲି ! ମା' ତ ତାଙ୍କର ଘର ଭିତରେ ବାବୁ, ତ ଛକ ଉପରୁ ଗୀତା ଦେଇଙ୍କ ସାଙ୍ଗରେ ରିକ୍ସାରେ ବସି ଗଲେ.... ଆଉ ମା ଜାଣିବେ କେମିତି ?

ଅପା—ଏ କଥା ତ ବେଳକୁ ବେଳ ବେଶୀ ହେଇ ଉଠୁଚି ଲୋ ସୁନା ମା ?

ସୁନାମା—ସେ ବାପଟା ଏମିତିକା ନିର୍ଲଜ ଯେ ଝିଅଟାକୁ ଏଠି ଛାଡ଼ି ଦେଇ ନିଶ୍ଚିନ୍ତ ହେଇ ରହିଚି ?

ଅପା—ବାପ କାହିଁକି ନିର୍ଲଜ ହବ ? ଆମ ଘର ସୁନା ତ ଭେଣ୍ଡି । ତା'ର ଦୋଷ କ'ଣ ?

ସୁନାମା—ମୁଁ କହୁଚ ଅପା—ତେମେ ମୋ କଥା ମାନ । ଯେମିତି ହେଲେ ତାକୁ ଉଠେଇ ଦଅ ।

ଅପା—ଉଠେଇ ଦେବ ଆଉ କେମିତି ? କ'ଣ ଘରୁ ତଣ୍ଟିଆ ମାରି ବାହାର କରିଦେବ ? କାଲି ତ ଦେଖିଲୁ ମୋ ପାଟିକି ଯାହା ଆସିଲା କହିଲି....ଏତେ ପାଲ ଲଗିଲା—ଆଜ ପୁଣି ଦେଖୁଚୁ... ଏ କଥା ?

ସୁନାମା—ମୁଁ କହୁଚ ଅପା....ବାବୁଙ୍କୁ ପଠା ପଟି କରି ତା' ବାହାଘରଟା ଉଠେଇ ଦଅ !

ଅପା—ବାହାଘର !! କୋଉଠି ସେ ବାହା ହବ ? ତାକୁ ପୁଣି ବାହା ହବ କିଏ ?

ସୁନାମା—ଏଇ ଗୋଟାଏ କଥା ! ମୁଁ ଆଜ କାହ୍ନୁଆ ପାଖରୁ ଖବର ଦଉଚ ?....ଦେଖିବ....ଆଉ ମାସକୁ ଦୁଆରେ ବେଦୀ ବନ୍ଧା ହେଇଥିବ ।

ଅପା—କାହ୍ନୁଆ ? କାହ୍ନୁଆ କିଏ ?

ସୁନାମା—ଆମ ଗାଁ କାହ୍ନୁଆ ! ବାହାଘର ଭଙ୍ଗାଣି କରି କରି ତା' ମୁଣ୍ଡ ବାଳ ପାଚିଲାଣି ! ଏମିତିକା କେତେ ଗାଣ୍ଠି.... ଧୂତରାଷ୍ଟ୍ର ଯୋଡ଼ି ସେ ଯୁଟେଇ ଦେଇଚ ନା । (ଆସିଲା ଶାନ୍ତ)

ଶାନ୍ତ—ଅପା !

ଅପା—ରାଜୁ ଘରେ ଅଛୁଟି ଶାନ୍ତ ?

ଶାନ୍ତ—ନାଁ ତ ! ଗୀତାକୁ ସାଙ୍ଗରେ ନେଇ ସେ ପରା ଗଲେ !

ଅପା—ତତେ କହି କରି ଯାଇଚ ?

ଶାନ୍ତ—କହିବେ ଆଉ କ'ଣ ?···ମୁଁ ଜାଣିଚ ସେ ଗଲେ !

ଅପା—ଦିହେଁ ଗୋଟାଏ ରିକ୍‌ସାରେ ବସି ଯାଇଚନ୍ତି ?

ଶାନ୍ତି—ନାଁ ତ ! ସିଏ ଆଜ ସାଇକଲ ନେଇ ଯାଇଚନ୍ତି !

ଅପା—ହଇଲେ ସୁନାମା ?

ସୁନାମା—ଓ ? ବାବୁ ତା' ହେଲେ ସାଇକଲ ନେଇ ଚଲେ···ମୁଁ କହିଲିକି ମନୁ ବାବୁ ସାଇକଲରେ ଗଲେ ବୋଲି ?

ଶାନ୍ତି—ମନୁ ତ ଆଜ ସକାଳୁ କୁଆଡ଼େ ଯାଇଚନ୍ତି···ଏ ଯାଏ ଫେରି ନାହାନ୍ତି !

ଅପା— ହେଲେ ତୁ ଦେଖିବୁ ! ଆଜ ନ ହେଲେ ବ କାଲି ଏ କଥା ଘଟିବ, ସେ ଆଗ ମତେ ଦେଖା ଗଲଣି !

ଶାନ୍ତି—ମତେ କହୁଚ ଯେ ଅପା ! ମୁଁ କ'ଣ କରିବ କହିଲ ?

ଅପା—ତୁ ସଫା ସଫା ରାଜୁକୁ ଏ କଥା ଚେତେଇ ଦଉନୁ କାହିଁକି ?

ଶାନ୍ତି—ତମେ ପରା ଶୁଣିଚ···ବାର ବାର କରି ସେ ସମସ୍ତଙ୍କୁ ମନା କରିଚନ୍ତି···ଗୀତା କଥା ଯେମିତି କେହି କୋଉଠି ଆଲୋଚନା କରିବ ନାହିଁ ।

ଅପା—ତା' କଥା ମାନ ଦଶ···ପନ୍ଦର ଦିନ ମଣିଷ ପାଟି ବନ୍ଦ କରି ରହିଲା ? ହେଲେ ଏଣିକି ଯେ କଥା ବଳେଇ ପଡ଼ିଲାଣି ?··· ତା' ସାହସକୁ ପୁଣି ଦେଖ···ମୋ' ଠାକୁରଙ୍କ ପାଇଁ ସେ ନୈବେଦ୍ୟ ବାଢ଼ିବ ?

ସୁନାମା—ମୁଁ ଯାହା କହୁଥିଲି ମ ଅପା ?

ଅପା—କ'ଣ ?

ସୁନାମା—ତା' ବାହାଘର କଥା ! ଝିଅ ଜନ୍ମ ଯେତେ ବେଳେ ପାଇଚ···ପର ଘରକୁ ସେ ଯିବ । ତା ବାପ ସିନା ପାରୁନ ! ଯାହା ପାଁଶ କି ତିନିଶ ଖରଚ ହବ ତମେ ତୁଲେଇ ନବ ! କେମିତି ସେ ଜଞ୍ଜାଳ ତୁଟି ଯାଉ !

ଶାନ୍ତ—ଇଏତ ସବୁଠୁ ଭଲ କଥା ! ହେଲେ ସେ ରାଜି ହେଲେ ତ ?

ସୁନାମା—କଏ ? ବାବୁଙ୍କ କଥା କହୁଚ ?

ଶାନ୍ତ—ହଁ ! ତାଙ୍କ ମନ ନ ମାନିବା ଯାଏ କ'ଣ ସେ ରାଜି ହେବେ ?

ଅପା—କଥାର ମୂଳ ତା' ହେଲେ କୋଉଠି ତୁ ବୁଝୁ ! ପର ଝିଅ ପର ଘରକୁ ଯିବ । ସିଏ ଅରାଜି ହବ କାହିଁକି ?

ଶାନ୍ତ—ଏଥିରେ ସବୁଠୁ ମୁଁ ବେଶୀ ଦଣ୍ଡ ପାଉଚି ଅପା ! ସବୁ କଥା ଜାଣୁଚି···ଶୁଣୁଚି····ହେଲେ ମୁଁ ମରି ଗଲେ ତ ତାଙ୍କୁ ଅବିଶ୍ୱାସ କରି ପାରିବି ନାହିଁ ; (ଶାନ୍ତ ଆଖିରେ ଲୁହ)

ସୁନାମା—ବାବୁଙ୍କୁ ପିନା ତେମେ ଅବିଶ୍ୱାସ କରିବ ନାହିଁ ମା ? ହେଲେ ଗୀତା ଦେଈ ?

ଅପା—ରାଜୁକୁ ମୁଁ ପିଲା ଦିନୁ ପାଳିଚି—ପୋଷିଚି । ମୁଁ ଜାଣେ ସେ ପିଣ୍ଡା ସୁନାରେ ଗଢ଼ା । ହେଲେ ଏ ଯୋଉ ଜଞ୍ଜାଳ ଆସି ତା' ଭାଗ୍ୟରେ ଜୁଟିଚି···

ଶାନ୍ତ—ଏଥିରେ ମୁଁ କିଛି ହେଲେ ଭାବି ପାରୁନି ଅପା ! ଗୀତା ପରି ଝିଅ—

ସୁନାମା—ମୁଁ ମୂରୁଖ ଲୋକ ମା—ହେଲେ ମୁଁ ଗୋଟାଏ କଥା କହୁଚି !····ଆମ ଗୃନ୍ଦ ଗାଈଟି ଭାରି ଭଲ—ଭାରି ସୁନ୍ଦର !··· ସଭିଙ୍କ କଥ ସେ ମାନେ ।ଯିଏ' ବୋଲି ଜାଣି ଶୁଣି କ'ଣ ତେମେ ତାକୁନେଇ ଶାଗ କିଆରିରେ ବାନ୍ଧିବ ?

ଅପା—ଆଉ ଶାଗ କିଆରିରେ ବନ୍ଧା ହେଲେ କ'ଣ ସେ ତା' ପାଟି ବୁଜି ରହିବ, ନା ସେଠି ସେ ତା' ସୁନ୍ଦର ପଣିଆ ଦେଖେଇବ ।

ଶାନ୍ତ—(କାନ୍ଦି ଉଠି) ଅପା ?

ଅପା—ମୋ କଥା ମାନ୍ ମା ? ରାଜୁକୁ କହ:—ସେ ଚଞ୍ଚଳ କେମିତି ତାକୁ ଏଠୁ ବିଦା କରୁ···ନଇଲେ ମା ଜାଣିରୁ ତ···ଏ କେଳା କୁଡ଼ିଆ ନୁହେଁ ....କଳଙ୍କ କୁଡ଼ିଆ....

ସୁନାମା—କହିବତ ମା....ମୁଁ ଆଜ କାହ୍ନୁଆ ପାଖକୁ ଖବର ପଠେଇବ । ସେ କାଲି ବରଘର ଠିକଣା କରିଦବ ।—ବାପର ସିନା ସଖ୍ୟ ନାହିଁ, ତମର କୋଉ କଥାକୁ ଅଭାବ ।

ଅପା—ମୁଁ ପରା କହୁଚି—ଯାହା ପାଁଶ ତିନଶ ଖର୍ଚ୍ଚ ହେବ—ମୁଁ ଦେବି ।

ସୁନାମା—ହଁ ମା । ସେଇଆ କର ! ନଆଣ୍ଡ୍ରା ପିଲାଟା—କୂଳରେ ଲଗିଯାଉ ! ସେ ରକ୍ଷା—ତମେରକ୍ଷା—

ଅପା—ଠାକୁରଙ୍କର ପୁଣି ଏମିତି ବରାଦଯେ—ରାଜୁର ବାହାଘର ହବାର ଆସି ଆଠବର୍ଷ ହେଇଗଲା—ଏ ଯାଏ ସେ ବାପ ଡ଼ାକ ଶୁଣିଲା ନାହିଁ ! ମୁଁ ତ ଏଇକଥା ଭାବି ଭାବି ମରୁଚି ଲୋ ସୁନାମା !

ସୁନାମା—ହଁ ପରା ଅପା ? ମଣିଷ ମନକଥା - କେତେବେଳେ କୁଆଡ଼କୁ ଡାଳିବ କିଏ ଜାଣେ ? ତେମେ ସେଇଆ କର ଅପା....ଏ ବାହାଘର କଥା ଆଜ ତମେ ବାବୁଙ୍କୁ କୁହ···ମା' ବି କୁହନ୍ତୁ ।

ଅପା—କ'ଣ କହୁଚୁ ଶାନ୍ତ ? ରାଜୁ ଆମକଥା ରଖିବ ନାହିଁ ?

ସୁନାମା—ରଖିବେ ନାଇଁ କାଇଁକି ମ ଅପା ! ତମ ଶଶୁର ଘର ବାରବାଟି ସମ୍ପତ୍ତି ତେମେ ବିକି ଭାଙ୍ଗି ଆଣି ବାବୁଙ୍କୁ ମଣିଷ କରିଚ....ତେମେ ଯାହା କରିଚ, କୋଉବାପ ମା ବି ଥୁ' କରନ୍ତା ନାଇଁ—ତମକଥା ସେ ରଖିବେ ନାଇଁ ?

ଶାନ୍ତ—( ଆହତ କଣ୍ଠରେ ) ସୁନାମା········( ଚାଲିଗଲା)

ଅପା—କାହିଁକି ତା ମୁହଁ ଉପରେ ତୁ ଏତେବଡ଼ କଥାଟାଏ କହିଲୁ ଲୋ ? ମୋର ସବୁ ମୁଁ ତାଙ୍କୁ ଦେଇଚି···ଦେଲେ ମୁଁ କେବେ ଏମିତି ପଦେ କଥା ତାଙ୍କୁ କହିନି ! କାହିଁକି ତୁ ତାଙ୍କୁ ଏ କଥା କହିଲୁ ? ତୋ କଥା ଶୁଣି ତା ମୁହଁ ଏକା ବେଳକେ କଳା ପଡ଼ିଗଲା !

ସୁନାମା—ମୁଁ ଜାଣିଶୁଣି ପରା ତାଙ୍କୁ ଏକଥା କହିଚି ଅପା ।

ଅପା—ଜାଣି ଶୁଣି କହିଚୁ ?

ସୁନାମା—ହଁ ଏମିତି ନ କହିଲେ ତାଙ୍କୁ ବାଧିବ ନାହିଁ, କି ସେ ବାବୁଙ୍କୁ ଟାଣି କରି କିଛି କହିବେ ନାହିଁ....ଏଣିକି ଦେଖିବ କୋଉ ପାଣି କୁଆଡ଼କୁ ଯାଉଚି···

ଅପା—( ବାହାରକୁ ଗୃହିଁ ) ଇଏ କିଏ ? ମଦନ ବାବୁଟି ?

ସୁନାମା—ହଁ, ମଦନ ବାବୁ ।

ଅପା—ସେଇଟା ପୁଣି କାହିଁକି ଏତେବେଳେ ଆଇଲାଣି । ଯା ବୁଝ୍‌ ସେ କାହିଁକି ଆସିଚି ।

[ ନଳିନ ଭିତରକୁ ଗଲେ । ସୁନାମା ଅନ୍ୟ ବାଗରେ ଗଲା । ]



## ପଞ୍ଚମ ଦୃଶ୍ୟ

(ରାଜୁର ସେଇ କକ୍ଷ । ସମସ୍ତ-ଅପରାହ୍ନ । ଦୃଶ୍ୟ ଆରମ୍ଭରେ କକ୍ଷ ଶୂନ୍ୟ ଟିକଏ ପରେ ଆସିଲେ ମଦନ, ସୁନାମା ଭିତରୁ ଆସିଲା—ଦୁହେଁ···ଖୁବ୍ ସନ୍ତର୍ପଣରେ ପ୍ରାପ୍ତ ଏକ ସମୟରେ କକ୍ଷ ମଧ୍ୟରେ ପ୍ରବେଶ କଲେ ଓ ନିଜ ନିଜର ମାନସିକ ଦୁର୍ବଳତା ଯୋଗୁଁ ଦୁହେଁ ଦୁହିଁଙ୍କୁ ଦେଖି ଚମକି ଛିଠିଲେ, କିନ୍ତୁ ପରେ ପରେ ନିଜ ନିଜର ଭୁଲ ତ୍ରୁଟି ପାଇ ଆଶ୍ୱସ୍ତ ହେଲେ)

ସୁନାମା—ବାବୁ ଆଇଚନି ଦେଖି ଏଠିକି ଆଇଲିଟି ।....ଏଠି ଆସି ଚମକି ପଡ଼ିଲି....କହିଲି....ଆଉ କିଏ ଆଇଲା କି ?

ମଦନ—ଲୋକ ପାପ କାମରେ ହାତ ଦେଲା ବେଳେ ଆଖି ଆଗରେ ସ୍ୱୟଂ ଭଗବାନଙ୍କୁ ଦେଖିଲେ ବି ଚମକି ଉଠେ—ମୁଁ ତ ମଣିଷଟାଏ !

ସୁନାମା—କି କଥା କହୁଚ ମ ବାବୁ ! ମୁଁ · କାହିଁକି ପାପ କାମ କରିବି ?

ମଦନ—ତୁ କ'ଣ ଏକା ? ତତେ ଦେଖି ମୁଁ ବି ସେମିତି ଚମକି ଉଠିଲି !

ସୁନାମା—କଥାଟାଏ କହିଲେ ଏକା !

ମଦନ—ମୋ କଥା ଥାଉ ! ତୋ' କଥା ଆଗ କହ ? କାଲି ଯିବୁ ବୋଲି କହିଥିଲୁ—ଗଲୁ ନାହିଁ କାହିଁକି ?

ସୁନାମା—ବେଳ ପାଇଲି ନାହିଁ ! ଆଖି ଛୁଉଁଚି ବାବୁ···

ମଦନ—ଥାଉ ! ଆରମ୍ଭରୁ ନିୟମ କରି ବସ ନାହିଁ ! ଆହୁରି ଅନେକ କଥା ଅଛି ! ତୁ ଗଲୁ ନାହିଁ....ମତେ ଆସିବାକୁ ପଡ଼ିଲା ।

ସୁନାମା—ମଲା ! ତମେ ଦ' ବାବୁ ଯାକ ସାଙ୍ଗ....ସ୍ବା'ଙ୍କ ଘରକୁ ତ ତମରି ସବୁ ଦିନେ ଯା' ଆସ !

ମଦନ—ସବୁଦିନେ ତ ଏମିତି ଚୋର ସାଜି ଆସୁ ନଥିଲି ।

ସୁନାମା—କି କଥା କହୁଚ ମ ବାବୁ । ଦିନ ଦ' ପହରେ ତ ହେଇ ଆସିଚ....ଚୋର ପୁଣି କ'ଣ ?

ମଦନ—ତମ ବାବୁ ଘରେ ଅଛନ୍ତି ତ ?

ସୁନାମା—ହଁ

ମଦନ—ମାଆ ମାନେ ?

ସୁନାମା—ସମସ୍ତେ ସେ ପାଖରେ !

ମଦନ—ଠିକଏ ଦେଖିଆ !

ସୁନାମା—(ଦୁଆର ମୁହଁ ପାଖକୁ ଯାଇ ଫେରି ଆସି) ନା—ଏଣେ କେହି ନାହାନ୍ତି !

ମଦନ—ଆଚ୍ଛା ! ଗୋଟି ଗୋଟି କରି ମତେ ସବୁ କଥା କହ !

ସୁନାମା—ସେ ଦିନ ଯାହା ସବୁ ପଚାରୁ ଥିଲଟି ? ସବୁ ତ କହିଚ !

ମଦନ—ସେ ଦିନଠୁଁ ଆଜି ଯାଏ ପୃଥିବୀର ଲୋକ ସଂଖ୍ୟା କେତେ ବଢ଼ି ଗଲେଣି ଜାଣିଚୁ—ସେ ଦିନ କଥା ଆଜିକି ନାହିଁ । ଆଗେ ତମ ବାବୁଙ୍କ କଥା !

ସୁନାମା—ରାଜୁ ବାବୁଙ୍କ କଥା ତ ?

ମଦନ—ହଁ !

ସୁନାମା—ଆଖି ବୁଜିଁଚ ବାବୁ—

ମଦନ—ହୁଁ —ଏଥର ଆଖି ଖୋଲି କହ···ମୋର ଆପତ୍ତି ନାହିଁ ।

ସୁନାମା—ମୋର ବୁଦ୍ଧି ବଦ୍ୟା ଖର୍ଚ୍ଚ କରି ମୋ' ପାରୁ ପର୍ଯ୍ୟନ୍ତ ମୁଁ ଓର ଉଣ୍ଡିଲି··ହେଲେ କିଛୁ ଦେଖିନି ।

ମଦନ—ଠିକ୍ କହୁଚୁ ?

ସୁନାମା—ଆଖି ଫୁଟିଲା ପରା ? ଗୀତାତ ମୋ ପାଖରେ ଶୁଏ । ରାତି ରାତି ମୁଁ ଚେଇଁକରି ଦେଖିଚି—ବାବୁ ଭୁଲରେ ବି ଏଣିକି ପାଦ ପକାନ୍ତି ନାହିଁ । ନିଜ ମା' ପେଟ ଭାଇ ଭଉଣୀ ପରା ଏମିତି ଧର୍ମ ରଖି…ଏମିତି ମହତ୍ତ୍ୱ ଜଗି ଚଳିବେ ନାହିଁ ।

ମଦନ—ଆଚ୍ଛା ! ଆଉ ଏ ଟୋକାଟା ?

ସୁନାମା—କିଏ…ମନୁବାବୁ ?

ମଦନ—ହଁ !

ସୁନାମା—(ମୁହଁ ମୋଡ଼ି) ମରଦ ମୁଅ ପୁଣି ଏମିତି ମାଇଚିଆ ଥା'ନ୍ତି !! ମୁହଁ ଟେକ ଦିନେ ଗୀତା ଆଡ଼କୁ ଚାହିଁଲଣି ନା ?

ମଦନ—ବେଶ୍ ଠିକ୍ ଅଛି !…ହଁ ଶାମବାବୁ ସାଙ୍ଗରେ ମୋର ଦେଖା ହେଇଥିଲା । ଗୀତାର ବାହାଘର ପ୍ରସ୍ତାବ କଥା ଶୁଣି ସେ ଭାରି ଖୁସି ।

ସୁନାମା—ମା' ପରା ତାଙ୍କୁ ଡକେଇ ପଠେଇଚନ୍ତି—ଆଜି ବାହାଘର କଥା ପଡ଼ିବ ।…ହଁ…ଆମ ବାବୁ ଯଦି ଏ ବାହାଘର କଥାରେ ରାଜି ହୋଇଯାନ୍ତି ?

ମଦନ—ରାଜୁ ଏ ପ୍ରସ୍ତାବରେ ରାଜି ହେବ ? ଗୋଟାଏ ଅପଦାର୍ଥ, ମାଇଚିଆ ଟୋକା…ମାରୱାଡ଼ି ଘରେ ଚାକିରି କରେ…ତା' ସାଙ୍ଗରେ ଗୀତାର ବାହାଘର ପ୍ରସ୍ତାବରେ ରାଜୁ ପୁଣି ହଁ ଭରିବ ? ଖୁବ୍ ଭଲ ପାତ୍ରଟାଏ ପାଇଲେ ବି ରାଜୁ ଏଇନେ ଗୀତାକୁ ବାହା କରେଇ ଦେବନି ?

ସୁନାମା—କାହିଁକି ମ ? ଆମ ବାବୁଙ୍କ ମତି ଗତି ତ ଖରାପ ନୁହେଁ …ତାଙ୍କର ଆଉ କି ସ୍ୱାର୍ଥ ରହିଲା ।

ମଦନ—କି ସ୍ୱାର୍ଥ ଅଛି ସେ କଥା ଭଗବାନ ବି କହି ପାରିବେ ନାହିଁ ! ଆମେ ସମସ୍ତେ ଜାଣିଚୁ—ନିଜେ ରାଜୁ ବି ଜାଣେ—ଗୀତା ସହିତ ତା'ର ସମ୍ବନ୍ଧ ଅତି ନିର୍ମଳ । ହେଲେ ଭଗବାନ ପୁରୁଷ ମନକୁ ଏମିତି ଗଢ଼ିଚନ୍ତି ଯେ ତାର ଭିତରେ ଟିକିଏ ଗୋଳମାଳ କୋଉଠି ରହିଯିବ···ଆଉ ସେଇଥିରୁ ହବ ମହାଭାରତର ସୃଷ୍ଟି ।

ସୁନାମା—ସତରେ ଯଦି ବାବୁ ଏଇ କଥାରୁ ମହାଭାରତ ଲାଗେ···

ମଦନ—ଏଥିରେ ସତ ମିଛ ଆଉ କ'ଣ ରହିଲା ? ଇଏ ପରା ଅଙ୍କ କଷିଲା ପରି କଥାହେଇ ରହିଚି । ତେଣିକି ତୋ' କାମ ତୁ ତୁଲେଇଲେ ହେଲା !

ସୁନାମା—ସେ କଥା ମତେ ଆଉ କହିବାକୁ ହବନାହିଁ····ମୋ ବାଟରେ ମୁଁ ଠିକ୍ ଅଛି ।

ମଦନ—ଆଚ୍ଛା ! ମୁଁ ତା' ହେଲେ ଯାଏ ।

ସୁନାମା—କାହିଁକି ? ରହୁନ ତମେ ! ବାହାଘର କଥାତ ତମେ ଉଠେଇଥିଲ !

ମଦନ—ରହିବାରେ ମୋର ଆପତ୍ତି ନଥିଲା ଯେ - - ଆଉ କାହାସାଙ୍ଗରେ ଯେତେବେଳେ ଦେଖା ହେଇନି ଖସିଯିବା ଭଲ ! ···ଦେଖ୍—ଯାହା ଯାହା ମୁଁ କହିଚି···

ସୁନାମା—ମୁଁ ସବୁ ମନେ ରଖିଚି—( ମଦନ ଚାଲିଗଲେ, ସୁନାମା ଭିତରୁ କାହାକୁ ଆସିବାର ଦେଖି ତର ତର ହେଇ ଅନ୍ୟଆଡ଼େ ଚାଲିଗଲା-ଟିକିଏ ପରେ ଆସିଲା ରାଜୁ । ବାହାରକୁ ଯିବାକୁ ପ୍ରସ୍ତୁତ ହେଇ ଆସିଲା ! ପଛେ ପଛେ ଆସିଲା ଶାନ୍ତି )

ଶାନ୍ତି—ତୁମେ ପୁଣି କୁଆଡ଼େ ବାହାରିଲଣି ଯେ ?

ରାଜୁ—ହଁ, ମୁଁ ଯାଉଚି-ମୋର କାମ ଅଛି !

ଶାନ୍ତି—ନା, ତମେ ଯାଅ ନାହିଁ-ରୁହ !

ରାଜୁ—କାହାଁକ ?

ଶାନ୍ତ—ପୁଣି ସେଇ କଥା ତମେ ପଚାରୁଚ ?

ରାଜୁ—ମତେ ତେବେ ସ୍ପଷ୍ଟ କୁହ ଶାନ୍ତ-କ'ଣ ତମେ ଚାହଁ ??

ଶାନ୍ତ—ମୁଁ ଚାହେଁ—ଏ କଥାର ଗୋଟାଏ ନିଷ୍ପତ୍ତି ତମକୁ ଆଜି କରିବାକୁ ହବ !

ରାଜୁ- "ନିଷ୍ପତ୍ତି" ତୁମେ କାହାକୁ କହୁଚ ଶାନ୍ତ ? ସବୁ ଜାଣିଶୁଣି ତୁମେ ପୁଣି କାହାଁକ ଆମର ଏ ସଂସାର ଭିତରେ ବିଷ ଢ଼ାଳି ଦବାକୁ ଯାଉଚ ?

ଶାନ୍ତ—ବିଷ ଯଦି ମୁଁ ଢ଼ାଳି ଦେଉଥାଏ—ତେବେ ସେ ବିଷର ସୃଷ୍ଟିକର୍ତ୍ତା କିଏ ? ତମର ଏ ଅମୃତ-ଭରା ସଂସାର ଭିତରେ କିଏ ଆଣି ସେ ବିଷକୁ ସ୍ଥାନ ଦେଇଥିଲା ?

ରାଜୁ—ଶାନ୍ତ ?

ଶାନ୍ତ—ମୋର ଗୋଟାଏ ପ୍ରଶ୍ନର ଉତ୍ତର ତମେ ଦେଇପାରିବ ?.... ଗୀତା ତମର କିଏ ? ହଁ, ମୁଁ ଏଇକଥା ତମକୁ ପଚାରୁଚି.... କୁହ ଗୀତା ତମର କିଏ ?

ରାଜୁ—ଏ ପ୍ରଶ୍ନ ତମେ ମତେ ଆଜି ପଚାରୁଚ ଶାନ୍ତ ?

ଶାନ୍ତ—ହଁ ! କାରଣ ଆରମ୍ଭରୁ ଏ ପ୍ରଶ୍ନ ମୋ ନିଜକୁ ମୁଁ ନିଜେ ବହୁବାର ପଚାରିଚି-ହେଲେ ଉତ୍ତର ଖୋଜି ପାଇନି । ···ସେଇଥିପାଇଁ ଆଜି ତୁମକୁ ପଚାରୁଚି···କୁହ, ଗୀତା ତମର କିଏ ?

ରାଜୁ—ତମ ପ୍ରଶ୍ନର ଏକମାତ୍ର ଉତ୍ତର ହଉଚି—ଗୀତା ମୋର କେହି ନୁହେଁ....କେହି ନୁହେଁ । କିନ୍ତୁ........

ଶାନ୍ତ—କିନ୍ତୁ···ତୁମେ ତାର ସର୍ବସ୍ୱ ?

ରଞ୍ଜୁ—ଏମିତି ନିର୍ଦ୍ଦୟ ଭାବରେ ଏ କଥାଟାର ବିଚାର ତମେ କରନା ଶାନ୍ତି ! ସବୁତ ଜାଣ ତମେ-ସବୁ ତମକୁ କହିଚି । ···ତା'ର ସେଦିନ ସେ ଅସହାୟ ଅବସ୍ଥାରେ·······

ଶାନ୍ତି—କିନ୍ତୁ ଏ କଥାଟାକୁ ତୁମେ ଭୁଲି ଯାଉଚ କାହିଁକି ଯେ ତା'ର ସେ ଅସହାୟ ଅବସ୍ଥାହିଁ ଆଜି ସବୁ ଅଶାନ୍ତିର କାରଣ ହୋଇଚି ସେ ଦିନ ତୁମେ ତାକୁ ଆଶ୍ରୟ ଦେଇନଥିଲେ ତାକୁ ଆଶ୍ରୟ ଦେବାପାଇଁ ତମଠୁ ବଳି ଧନୀ—ମାନୀ—ଗୁଣୀ ଲୋକଙ୍କର ଅଭାବ ରହି ନଥାନ୍ତା ।

ରଞ୍ଜୁ—ଶାନ୍ତି !

ଶାନ୍ତି—ମୁଁ ଆଦୌ ଭୁଲ କହୁନି ।

ରଞ୍ଜୁ—ମୁଁ ଜାଣେ ତମେ ଠିକ୍ କହୁଚ ! ତମର ଇଙ୍ଗିତ ମୁଁ ବୁଝିଚି ! ସେଇ ମାନଙ୍କ ସହିତ ତେବେ ତୁମେ ମତେ ସମାନ ଆସନ ଦେବାକୁ ଚାହଁ—ନା ?

ଶାନ୍ତି—ମୁଁ ଯଦି ତୁମକୁ ଅପମାନ ଦେଉଥାଏ···ତେବେ ତମେ ମତେ ଦଣ୍ଡଦିଅ ! ମୁଁ କିନ୍ତୁ ଆଉ ପାରୁନି ! ଦିନ ପରେ ଦିନ ଗଡ଼ିଯାଉଚି । ସାଇ-ପଡ଼ିଶା-ବନ୍ଧୁ ବାନ୍ଧବ ସମସ୍ତଙ୍କ ମୁହଁରେ ସେଇ ଗୋଟାଏ କଥା—"ଗୀତା କାହିଁକି ଆସି ଏଠି ଅଛି—କେତେ ଦିନ ଆଉ ସେ ଏଠି ରହିବ" ?

ରଞ୍ଜୁ—ମଉସାଙ୍କ ଅବସ୍ଥାତ ତମେ ଜାଣୁଚ ଶାନ୍ତି, ତାଙ୍କ ମନର ବଳ ଏକା ବେଳକେ ଭାଙ୍ଗି ଯାଇଚି । ଏ ଅବସ୍ଥାରେ ଗୀତା ତାଙ୍କ ପାଖକୁ ଫେରିଗଲେ ସେ ଏକାବେଳକେ ପାଗଳ ହୋଇଯିବେ ! ଆଉ ଅପା ଯାହା କହୁଚି—

ଶାନ୍ତି—ଅପାଙ୍କ କଥାରେ ତମେ ରାଜିହବ ନାଇଁ କାହିଁକି ?

ରାଜୁ—ଗୋଟାଏ ଅପଦାର୍ଥ, ଅମଣିଷ ! ତା'ର ସଙ୍ଗରେ ଗୀତାର ବାହାଘର ହବ ? ଅପାର ଏ ପ୍ରସ୍ତାବରେ ମୁଁ ରାଜି ହବାକୁ ତମେ ମତେ କିମିତି କହୁଚ ?

ଅପା—( ପ୍ରବେଶ କରି ) ଯୋଉ କାର୍ତ୍ତି ଅଙ୍କେ ସେ ଏଠିକି ଆସିଚି-ତା' ପାଇଁ କୋଉଠୁ ତୁ ଗୋଟାଏ ରାଜପୁତ୍ର ବର ଖୋଜି ଆଣିଦବୁ ମୁଁ ଶୁଣେ ?

ରାଜୁ—ଅପା !

ଅପା—ଆଖି ଆଗରେତ ଶାନ୍ତକୁ ଦେଖୁଚୁ । ତା' କଥାତ ଶୁଣିଲୁ ! କହ-ଏ ଘରେ ଶାନ୍ତ ରହିବ ନା ଗୀତା ରହିବ ?

ରାଜୁ—ମୁଁ କିଛି ଜାଣେନା···ମୁଁ କିଛି କହି ପାରିବ ନାହିଁ··· ( ଯିବାକୁ ଲାଗିଲା )

ଅପା—ତୁ ଚାଲି ଯାଉଚୁ ଯେ ? ତୋ ମଉସାଙ୍କୁ ମୁଁ ଡ଼ାକେଇଚି ସେ ଏଇନେ ଆସିବେ ।

ରାଜୁ—କାହିଁକି ? କାହିଁକି ତାଙ୍କୁ ଡ଼ାକେଇଲୁ ?

ଅପା—ଏଇ ବାହାଘର କଥାପାଇଁ ।

ରାଜୁ—ମୁଁ ଯେ ଏଘରେ ଗୋଟାଏ ମଣିଷ-ଏକଥା ତମେ କେହି ସ୍ୱୀକାର କରିବାକୁ ଚାହଁନା- । ( ଏତିକି ବେଳେ ବାହାରୁ ଆସିଲେ ଶ୍ୟାମ । ଗୀତାର ବାହାଘର ପ୍ରସ୍ତାବ ଚାଲିଚି-ଏଥିପାଇଁ ସେ ଆମନ୍ତ୍ରିତ ହୋଇ ଆସିଚନ୍ତି )

ଶ୍ୟାମ—ରାଜୁ !

ରାଜୁ—ମଉସା ।

ଶ୍ୟାମ—ତୋ ସାଙ୍ଗରେ ମୋର କାଲି ଦେଖା ହୋଇ ଥିଲା ନା ରାଜୁ ! କାଲିତ ତୁ ମତେ ଏ କଥା କିଛି କହି ନଥିଲୁ ?

ଅପା—( ହସି ) ତା' କଥା କ'ଣ ତମେ ଜାଣନା ! ସିଏ କ'ଣ ଘର କଥା କିଛି ବୁଝେ, ନା ଜାଣେ ।

ଶାମ—ରାଜୁ ଜାଣେନା—ଆଉ ଗୀତାର ବାହାଘର—

ଅପା—କି କଥା ତମେ କହୁଚ ମ ? ଜାଣେନାଇଁ ବୋଲି କ'ଣ ଜାଣିବ ନାଇଁ ! ସେଇଥିପାଇଁ ଟିଏ ତମକୁ ଡ଼ାକେଇଚି ।… ଆରେ ରାଜୁ ବସ୍ ! କଥାଟା ନଷ୍ଟ କରଦେ । ମଉସା ତୋର ଆସିଚନ୍ତି—ଯେତେହେଲେ ସେ ଝିଅର ବାପ—ତାଙ୍କ ଇଚ୍ଛା କ'ଣ ସେ କୁହନ୍ତୁ ।

ଶାମ—ମତେ ଆଉ ଏକଥା କ'ଣ ପଚାରୁଚ କହିଲ ? ମୁଁ ତ ଜାଣେ ସେ ଆଉ ମୋ ଝିଅ ନୁହେଁ-ତମ ଝିଅ । ତମେମାନେ ଯେତେବେଳେ ଏ ବାହାଘର ଠିକ୍ କରିଚ ମୋର କୋଉ କଥାରେ କିଛି ଆପତ୍ତି ନାହିଁ । ମୋର ଯାହା ଅଛି-ବାକି ଗାଙ୍ଗି ସବୁଆଣି ମୁଁ ତମ ପାଖରେ ଥୋଇ ଦେବି । ଏଇଠି ତମରି ଦୁଆରେ ତା' ପାଇଁ ବେଦୀବନ୍ଧା ହବ ।

ରାଜୁ—ଆପଣ ଏ ପ୍ରସ୍ତାବରେ ରାଜି ମଉସା ?

ଶାମ—ମତେ ପୁଣି ଏକଥା ତୁ ପଚାରୁଚୁ କାହିଁକି ? ଗୀତା ପରି ଝିଅ—ତାକୁ ଭଲରେ ବାହାଦେବି ବୋଲି ମନରେ କେତେ ବଡ଼ଆଶା ବାନ୍ଧିଥିଲି ! ସେ ଆଶାତ ଆଉ ନାହିଁ ? ଏଣିକି ତମେମାନେ ଯାହା ଠିକ୍ କରିବ—

ରାଜୁ—ନା—ଏ ପ୍ରସ୍ତାବରେ ମୁଁ ରାଜି ନୁହେଁ ?

ଶାମ—ତୁ ରାଜି ନୋହୁଁ ? କାହିଁକି ?

ଅପା—ସେଇ କଥା ମୁଁ ଏଇନେ ତାକୁ ପଚାରୁଥିଲି-ସତ କଥାଟାକୁ ତ କେହି ଆଖିବୁଜି ଘୋଡ଼ଇ ଦେଇ ପାରିବ ନାଇଁ ! ଇଏତ ଯୋଗର କଥା !……ଯାହା କହନ୍ତୁ…ଝିଅଟା ବାଚ୍ଛନ୍ଦ ହେଇ ରହିଲା ଭଲ ରହିବ ।

ରାଜୁ—ଅପା !

ଅପା—ତୁ କହ-ତୋ' ମଉସା ବ କହନ୍ତୁ—ଗୀତାର ଦୋଷ ଥାଉ କି ନ ଥାଉ, ହେଲେ ସଂସାର ଆଖିରେ ସିଏତ ଦୋଷୀ ! ସେଇଥି ପାଇଁ ଏତେ ବାଛ ବିଚାର ନ କରି ତାକୁ କେମିତି ହେଲେ ପର ଘରକୁ ଉଠେଇ ଦବାକୁ ପଡ଼ିବ !

ରାଜୁ—ମଉସା ! ଆପଣ ··ଭୁଲି ଯାନ୍ତୁ ମଉସା !

ଶାମ—ରାଜୁ !

ରାଜୁ—ଏ ବାହାଘର ହୋଇ ପାରିବ ନାହିଁ !

ଅପା—ମୁଁ କହୁଚି,—ଏ ବାହାଘର ହବ !

ରାଜୁ—ଅପା !

ଅପା—ମୁଁ ପୁଣି କହୁଚି ରାଜୁ-ସମସ୍ତଙ୍କର ମଙ୍ଗଳ ଚାହୁଁଚି । ତୁ ଏଥିରେ ବାଧା ଦେ'ନା—

ରାଜୁ—କାହାର କି ମଙ୍ଗଳ କଥା ତୁ କହୁଚୁ ଅପା !

ଅପା—ସେ କଥା ଆଉ ମୁହଁ ଫିଟେଇ ଏଠି-କହିବାକୁ ପଡ଼ିବ ?

ଶାମ—ରାଜୁ !···ଏସବୁ କ'ଣ ଏଠି ହଉଚି ରାଜୁ !

ରାଜୁ—ଆପଣ ମତେ କ୍ଷମା କରନ୍ତୁ ମଉସା !

ଶାମ—ମୋର ଗୋଟାଏ କଥାତୁ ରଖିବୁ ?

ରାଜୁ—କ'ଣ ?

ଶାମ—ଗୀତାକୁ ମୁଁ ସାଙ୍ଗରେ ନେଇ ଯିବ !

ରାଜୁ—ନେଇ ଯିବେ ? କାହିଁକି ?

ଶାମ—ସେ କଥା ପଚାରି ଆଉ ଲାଭ ନାହିଁ ରାଜୁ ! ଯୋଉ ଭୁଲ ମୁଁ କରିଥିଲି···

ରାଜୁ—ନା ମଉସା-କେହି କିଛି ଭୁଲ କର ନାହାନ୍ତି ! ଗୀତା ଏଠୁ ଯାଇ ପାରିବ ନାହିଁ !

ଶାନ୍ତ—ତାଙ୍କ ଝିଅକୁ ସେ ନେବେ···ତମେ ଏଥିରେ ବାଧା ଦଉଚ କାହିଁକି ?

ରାଜୁ—ଏ କଥା···ଏ କଥା ତମେ ପଚାରୁଚ ଶାନ୍ତ ?

ଶାନ୍ତ—ହଁ—ମୁଁ ପଚାରୁଚି ! ଏତେ କଥା ପରେ ଆଜ କିଛି ଲୁଚେଇ ଲାଭ ନାହିଁ ! ତୁମେ କୁହ, ଏଥିରେ ତମର କି ସ୍ୱାର୍ଥ ରହିଚି ?

ରାଜୁ—ଗୀତା ଏଠି ରହିବାରେ ଯଦି ମୋର ସ୍ୱାର୍ଥର ସନ୍ଧାନ ପାଇଥାଅ-ତା' ହେଲେ ତା'ର ଶେଷ ପରିଣାମ ଦେଖିବା ପାଇଁ ତମକୁ ଅପେକ୍ଷା କରିବାକୁ ପଡ଼ିବ !

ଶାମ—ରାଜୁ !

ରାଜୁ—ନା—ମଉସା—ଆପଣ ଯା'ନ୍ତୁ ଗୀତା ଯାଇ ପାରିବ ନାଇଁ ।
(ନିଜେ ଭିତରକୁ ଚାଲି ଗଲା)



## ଷଷ୍ଠ ଦୃଶ୍ୟ

(ପୂର୍ବର ସେଇ କକ୍ଷ । ସମସ୍ତ ମଧ୍ୟ ରାତ୍ରି । ଅନ୍ଧାର ଭିତରେ ଆସିଲା ଗୀତା ...ଦେହରେ ଗୋଟାଏ ଚାଦର ଢାଙ୍କି ହୋଇଛି, ଟିକଏ ପରେ ସେ ସୁଇଚ ଟିପି ଆଲୁଅ ଜାଳିଲା । ହସ୍ତ ପାଦ—ହସ୍ତ ଚୂଡ଼ାମଣି ! ତା'ର ଉପସ୍ଥିତ ଯେମିତ କେହି ଜାଣି ପାରିବେ ନାହିଁ, ସେଥିପାଇଁ ଚାରି ଆଡ଼କୁ ତା'ର ସତର୍କ ଦୃଷ୍ଟି—ତା' ପରେ ସେ ଆଲୁଅ ଲିଭାଇ ଦେଇ ସଦର ଦରଜା ଆଡ଼କୁ ଆଗେଇ ଚାଲିବେଳେ ଅନ୍ତରାଳରୁ "ମନୋଜର" ପାଟି ଶୁଭିଲା )

ମନୋଜ—(ଭିତରୁ) କିଏ ? (ଗୀତା ସାଙ୍ଗେ ସାଙ୍ଗେ ଚାଦରଟାକୁ ଗୋଟାଏ କଣକୁ ଫିଙ୍ଗି ଦେଇ ଠିଆ ହୋଇ ରହିଲା । ମନୋଜ ଆସିଲା)

ମନୁ—କିଏ ? (ଆଲୁଅ ଜାଳିଲା) ଗୀତା !! ଏତେ ରାତିରେ, ଏଠି ତମେ କ'ଣ କରୁଥିଲ ?....ରାତି ପ୍ରାୟ ଦୁଇଟା ବାଜିଲାଣି.... କ'ଣ କରୁଥିଲ ଏଠି ?

ଗୀତା—କିଛି ନା ।

ମନୁ—ଏତେ ବେଳ ଯାଏ ଶୋଇନ କାହିଁକି ?

ଗୀତା—ଶୋଇଥିଲି....ନିଦ ହେଲାନି । ଏ ଘରକୁ ଚାଲି ଆସିଲି....!

ମନୁ—କିନ୍ତୁ ଏଠିକି ଆସି ଆଲୁଅ ଜାଳି ପୁଣି ଲିଭାଇଲ କାହିଁକି ? (ଗୀତା ନିରୁତ୍ତର) କୁହ ଗୀତା ? କ'ଣ ହେଉଛି ?

ଗୀତା—କହିଲି ତ ମତେ ନିଦ ହେଲା ନାହିଁ—ମୁଁ ଏଠିକି ଚାଲି ଆସିଲି !

ମନୁ—ବୁଝିଲି ! ଆଜିକାର ଘଟଣାରୁ ମନ ତମର ବିଷାକ୍ତ ହୋଇ ଉଠିଛି । କିନ୍ତୁ, ତମେ ଚିନ୍ତା କରୁଛ କାହିଁକି ? ଏ ପୃଥିବୀରେ ତ ଅନ୍ତତଃ ଜଣେ ଲୋକ ଅଛି, ଯିଏ ତମ ପାଇଁ....

ଗୀତା—(କ୍ରୋଧ) ଆପଣ ବି ମତେ ଉପହାସ କରୁଛନ୍ତି ?

ମନୁ—ଉପହାସ କରିବାର ସମୟ ବା କ୍ଷେତ୍ର ଏ ନୁହେଁ ଗୀତା, ଭାଇଙ୍କୁ ତ ତମେ ଅବିଶ୍ୱାସ କରି ପାରିବ ନାହିଁ ।

ଗୀତା—ଆଜି ସ୍ୱୟଂ ଭଗବାନଙ୍କୁ ବିଶ୍ୱାସ କି ଅବିଶ୍ୱାସ କରିବାରେ ମୋର ଲାଭ କ୍ଷତି କିଛି ନାହିଁ । (ଯିବାକୁ ଉଦ୍ୟତ)

ମନୁ—କୁଆଡ଼େ ଯାଉଛ ?

ଗୀତା—ଶୋଇବାକୁ !

ମନୁ—ମିଛ କଥା ! ଶୋଇବା ଭଳି ମନର ଅବସ୍ଥା ତମର ବର୍ତ୍ତମାନ ନାହିଁ !

ଗୀତା—କ'ଣ ଆପଣ କହୁଛନ୍ତି ?

ମନୁ—ତମକୁ ଏ ସବୁ କଥା କହିବାର ଅଧିକାର ମୋର କେବେ ନ ଥିଲା । ତଥାପି···ଆଚ୍ଛା,ଗୋଟାଏ କଥାରେ ତମେ ମୋ ସହିତ ନିଶ୍ଚୟ ଏକ ମତ ହେବ ?

ଗୀତା—କ'ଣ ?

ମନୁ—ତମ ଜୀବନର ଏଇ ସବୁ ସମସ୍ୟାର ଏକମାତ୍ର ସମାଧାନ ହେଉଛି....ତମର ବିବାହ !

ଗୀତା—ନା....

ମନୁ—ନା ? ନିଜେ ଭାଇ ଯଦି ଉପଯୁକ୍ତ ପାତ୍ର ସହିତ ତମ ବିବାହର ଆୟୋଜନ କରନ୍ତି ?

ଗୀତା—ଫଳ କିଛି ହେବ ନାହିଁ ! ମାନ-ସମ୍ମାନ, ସୁଖ-ଶାନ୍ତି, ଯଦି ବିବାହର ଉଦ୍ଦେଶ୍ୟ ହୁଏ, ମୋ' ଜୀବନରେ ତା' ଆଉ ସମ୍ଭବ ନୁହେଁ ।

ମନୁ—ହୁଁ । କ'ଣ ତେବେ ତମ ଜୀବନର ଲକ୍ଷ୍ୟ ?

ଗୀତା—ଜାଣେନା ।

ମନୁ—ସେଇଥି ପାଇଁ ତା' ହେଲେ ରାତି ଦୁଇଟା ବେଳେ ଏମିତି ଲକ୍ଷ୍ୟହୀନ ଭାବରେ ତମେ ଏଠୁ ଚାଲି ଯିବାକୁ ବାହାରିଥିଲ ?

ଗୀତା—କିଏ କହିଲା ! ମୁଁ କାଇଁକି କୁଆଡ଼େ ଯିବି ?

ମନୁ—ତେବେ ରୁହ—ମୁଁ ଭାଇଙ୍କୁ ଡାକେ ।

ଗୀତା—ଭାଇଙ୍କୁ ଡାକିବେ ? କାହିଁକି ?

ମନୁ—ସେ ଆସି ଦେଖନ୍ତୁ ତମର ଅବସ୍ଥା ।

ଗୀତା—(କାନ୍ଦି) ମନୋଜ ବାବୁ ! ଆପଣ କହୁଥିଲେ ନା, ରାତି ଦୁଇଟା ବାଜିଲାଣି ।···ରାତି ଦୁଇଟା ବେଳେ ଭାଇ ଆସି ଦେଖିବେ....ଏ ଘରେ ଆପଣ ଆଉ ମୁଁ—

ମନୁ—ଗୀତା !

ଗୀତା—ଆପଣ ଯାଆନ୍ତୁ ! ଆପଣ କ'ଣ ଏଇଆ ଚାହାନ୍ତି ?

ମନୁ—କ'ଣ ତମର ଉଦ୍ଦେଶ୍ୟ ଗୀତା ?

ଗୀତା—କହୁଚି ତ, ମୁଁ ଜାଣେନା କ'ଣ ମୋର ଉଦ୍ଦେଶ୍ୟ ?

ମନୁ—ବେଶ୍ ! ତମେ ଶୋଇବ ଯାଅ ।

ଗୀତା—(ଯାଉ ଯାଉ ଫେରି) ଆପଣ ଠିକ୍ କହିଥିଲେ ମନୋଜବାବୁ !

ମନୁ—କଣ ?

ଗୀତା—ନିଦରେ ଶୋଇବା ଭଳି ମନର ଅବସ୍ଥା ମୋର ବର୍ତ୍ତମାନ ନାହିଁ ।

ମନୁ—କିନ୍ତୁ···

ଗୀତା—ଆପଣ ବିଶ୍ୱାସ କରନ୍ତୁ ! ମୁଁ ମିଛ କହୁ ନାହିଁ ! ମୁଁ କୁଆଡେ ଚାଲି ଯିବାକୁ ଏଠିକି ଆସି ନ ଥିଲି । କାହିଁକି କୁଆଡ଼େ ଯିବି ? (କାନ୍ଦି) ଏମିତି ଦିନେ ରାତି ଅଧରେ ଘରୁ

ଯାଇଥିଲି । ତା'ର ଫଳରେ ଆଜି ମୁଁ ମୋ' ଚାଲିବାର ବାଟ ଖୋଜି ପାଉନି—ସବୁ ବାଟ ମୋ ପାଇଁ ବନ୍ଦ । ଆଉ ପୁଣି ମୁଁ ଯିବି କୁଆଡ଼େ ?

ମନୁ—ତମେ ଯାଅ ଗୀତା, ଶୋଇବ ଯାଅ ।

ଗୀତା—ମୋର ଗୋଟାଏ ଅନୁରୋଧ ରଖିବେ ?

ମନୁ—ଅନୁରୋଧ !!

ଗୀତା—ଏ ଘଟଣା ଆପଣ କାହାକୁ କହିବେ ନାହିଁ ।

ମନୁ—ତମେ କ'ଣ କହୁଚ, ତମେ ବୋଧ ହୁଏ ନିଜେ ତା' ଜାଣ ନାହିଁ ଗୀତା । ତମେ ନିଜେ କହୁଚ—ତମକୁ ନିଦ ହେଉନି, ତମେ ଏଠିକି ଚାଲି ଆସିଲ । ଏଥିରେ କାହାକୁ କ'ଣ କହିବାର ଅଛି ମୁଁ ବୁଝି ପାରୁନି ।

ଗୀତା—ଭାଇଙ୍କୁ କ'ଣ ଆପଣ ଜାଣନ୍ତି ନାହିଁ । ତାଙ୍କ ମନରେ ଦୁଃଖ ଦେଲା ଭଳି କୌଣସି କାମ ମୁଁ କରିବି ନାହିଁ ବୋଲି ତାଙ୍କ ଆଗରେ ପ୍ରତିଜ୍ଞା କରିଥିଲି ।...

ମନୁ—ତମ ଅନୁରୋଧ ମୁଁ ରଖୁଚି ଗୀତା......ଏ କଥା କେହି ଜାଣିବେ ନାହିଁ ! ତମେ ଯାଅ-ଶୋଇବ ଯାଅ-( ଆଉ କିଛି ନକହି ଗୀତା ଚାଲିଗଲା । ମନୋଜ ପକ୍ଷରେ ଏ ଯେମିତି ଗୋଟାଏ ପ୍ରହେଳିକା । କିଛି ସମୟ ସେଠି ସେ ସ୍ତବ୍ଧ ହୋଇ ଠିଆ ହୋଇ ରହିଲା ! ତା'ର ବକ୍ଷ ଭେଦକରି ବାହାରି ଆସିଲା ଏକ ଦୀର୍ଘଶ୍ୱାସ ! ତା'ପରେ ସେ ସୁଇଚ ଟିପି ଆଲୁଅ ଲିଭାଇଲା ! ମଞ୍ଚ ପୂର୍ଣ୍ଣ ଅନ୍ଧକାର, ଯନ୍ତ୍ର ସଙ୍ଗୀତ ବାଜି ଉଠିଲା !. ଦୂରରୁ ଘଣ୍ଟା ଧ୍ୱନି ଶୁଣାଗଲା-ରାତି ଚାରିଟା ବାଜିଚି । ଏଇ ଦୃଶ୍ୟର ଘଟଣା ଚାଲିଚି....କେବଳ ସ୍ଥାନର ପରିବର୍ତ୍ତନ ଘଟିଚି ।

—ଅଳିନ୍ଦ—

ସ୍ୱଳ୍ପାଲୋକରେ ଦେଖାଗଲା ଗୋଟିଏ ଦିଗରୁ ଆସିଲା ସୁନାମା—ଅନ୍ୟ ଦିଗରୁ ଗୀତା । ସୁନାମା ହାତରେ ଗୋଟିଏ ଗ୍ଳେଟ ସୁଟ୍‌କେଶ୍ )

ସୁନାମା—( ବଢ଼କ୍ତ ହୋଇ ) କଉ ଦେଇ ! ମୁଁ ହଡ଼ଏ ହେଲା ଯାଇ ତେଣେ ବଇଚ ! ରାତିଆସି ବଜୁଠା ବାଜିଲଣି—ତମର ଦେଖା ନାହିଁ ।

ଗୀତା—ଆସ୍ତେ, ପାଟି କରନା ।

ସୁନାମା—କାହିଁକ ? କଏ ଉଠିଲାକ ?

ଗୀତା—ମନୋଜ ବାବୁ ।

ସୁନାମା—ତମକୁ ଦେଖିଚନ୍ତି ?

ଗୀତା—ହଁ ! ବୈଠକଖାନା ଘରେ !

ସୁନାମା—ମୁଁତ 'ବାଉକବାଠ ବାଟେ ଯାଇ ସେ ଗଳିରେ ବଇଚ । ତମକୁ ସେଇଠିକି ଆସିବାକୁ କହିଲି । ତେମେ ବୈଠକଖାନା ଘରକୁ ଯାଇଥିଲ କାହିଁକ ?

ଗୀତା—ମୋ' ମୁଣ୍ଡ ଯେମିତି ଗୋଳ ମାଳ ହୋଇଗଲା ସୁନାମା—ମୁଁ ଜାଣି ପାରିଲି ନାହିଁ, ମୁଁ କୁଆଡ଼େ ଯାଉଚ—କ'ଣ କରୁଚ—

ସୁନାମା—କେମିତି ଓଲକ ଝିଅଟା ମ ତମେ ! ଏପାଖ ବୋଲି ସେପାଖ କରି ବସୁଚ ! ···କ'ଣ କହିଲେ ମନୁବାବୁ ?

ଗୀତା—ସେ ଯାହା କହନ୍ତୁ ନ କହନ୍ତୁ—ମୁଁ ତାଙ୍କୁ ଦୁନିଆଁ ଯାକର ମିଛକଥା କହି ଭୁଲେଇ ଦେଇଚ ··· ( ଗଳାରେ ଅନୁଶୋଚନା )

ସୁନାମା—ଭଲ କଥାତ ତେମେ କହୁଚ ! ମିଛ ନକହି କ'ଣ ସତ କହିଥା'ନ୍ତ ! ....କହିଥା'ନ୍ତ—ତେମେ ଘର ଗୁଡ଼ କପେଇ ଯାଉଚ······

ଗୀତା—ସେଇ କଥା ସୁନାମା !....ମୋ ଜୀବନରେ ମୁଁ ଏମିତି ମିଛ କେବେ କହି ନ ଥିଲି—କି' ଏମିତ ଛଳନା କେବେ କରି ନଥିଲି ।

ସୁନାମା—ହଉ, ତମେ ଆସିବଟି—ଆସ । ଆଉ ଘଡ଼ିକେ ରାତି ପାହିଯିବ······ଆସ ! ( ଆଗେଇଆସିଲା )

ଗୀତା—ସୁନାମା···
ସୁନାମା—କ'ଣ ହେଲା ପୁଣି ?
ଗୀତା—ଭାଇ ?? ଭାଇ କ'ଣ···
ସୁନାମା—ଭାଇଙ୍କି ଛାଡ଼ି ଯିବାକୁ ମନ ହଉ ନାହିଁ—ଏଇଆ କହୁଚତ ?
ଗୀତା—ସେ କଥା ମୁଁ କହୁନ ସୁନାମା । ତାଙ୍କର ଭଲ ପାଇଁତ ମୁଁ ଏଠୁ ଚାଲି ଯାଉଚି । ହେଲେ, କାଲି ସେତେବେଳେ ସମସ୍ତେ ଏକଥା ଜାଣିବେ······ଆଗେତ ତାଙ୍କର ବଦନାମ ହବ !
ସୁନାମା—ପୁଣି ତେମେ ସେଇ ଢଙ୍ଗ ଧରୁଚ ଦେଇ !
ଗୀତା—ତୁ ମତେ କହ ସୁନାମା—ମୁଁ କ'ଣ କରିବି ?
ସୁନାମା—ଏଇ କଥା ସଞ୍ଜବେଳୁ ତେମେ ମତେ କହୁଚ, ଆଉ ସଞ୍ଜବେଳୁ ମୁଁ ଥରକୁ ଥର ତା' ଉତ୍ତର ତମକୁ ଦଉଚି ! ଆଉ ପୁଣି ଅଧିକା କ'ଣ କହିବି ? ( ସୁନାମା ଦେଖିଲା, ଗୀତା ହାତଛଡ଼ା ହୋଇ ଯାଉଚି । ସେଥିପାଇଁ ସେ ତା' କୌଶଳ ପ୍ରୟୋଗ ପାଇଁ ପ୍ରସ୍ତୁତ ହୋଇ ରହିଲା ! )
ଗୀତା—ତାଙ୍କୁ ନକହି ଯିବାର ସାହସ ମୋର ହଉନି । ଆଉ ତାଙ୍କୁ କହିଲେ—
ସୁନାମା—ସେ ତମକୁ ଛାଡ଼ିବେ ନାହିଁ ! ( ଗେହ୍ଲେଇ ହୋଇ ) ମୁଁ କ'ଣ ଏକଥା ଜାଣିନାହିଁ ଦେଇ ? ···ବାବୁ ତମକୁ ଯେମିତି ସୁଖ ପାଉନ୍ତି-ସେ କ'ଣ ତମକୁ କେବେ ହାତଛଡ଼ା କରିବେ ।
ଗୀତା—ସୁନାମା !
ସୁନାମା—ସୁନାମା କ'ଣ ମଣିଷ ନୁହେଁ ଦେଇ ? କାଲି ସକାଳେ ତମକୁ ନ ଦେଖିଲେ ଆଖି ଲୁହରେ ବାବୁଙ୍କ ଦିନ ସରିବ ନାହିଁ ! ଆଉ ସମସ୍ତେ ସିନା ଅନ୍ଧ—ଖାଲି ଅନ୍ଧାରରେ ବାଡ଼ି ବୁଲଉଚନ୍ତି— ହେଲେ ଏ କଥାତ ବାବୁ ଜାଣନ୍ତି—ତେମେ ଜାଣ···
ଗୀତା—ହେଲେ ତୁ କ'ଣ କହୁଚୁ ସୁନାମା ? କ'ଣ ମୁଁ ଜାଣେ ?

ସୁନାମା—ଆଉ ଜାଣେ—ମୁଁ । ରାତିରେ ତ ତମେ ମୋର ପାଖରେ ଶୁଅ ! ଥରେ ନୁହେଁ—ଦୁ' ଥର ନୁହେଁ—ତିନି ତିନି ଥର ମୁଁ ବାବୁଙ୍କୁ ଦେଖିଚି······ ( ଗୀତା ଭୀତ-ତ୍ରସ୍ତ ନୟନରେ ସୁନାମାଙ୍କୁ ଚାହିଁ ରହିଥାଏ ) ତେମେ ନିଦରେ ଶୋଇ ଥାଅ—ଅଧରାତି ଟାହାଣ୍ଟା ରାତିରେ ପାଦ ଚପି ଚପି ବାବୁଆସନ୍ତି··ଧୀରେ ଧୀରେ କବାଟରେ ଟିପା ମାରନ୍ତି । ଏଠିକି ଆସି ତେମେ ତମର ସବୁ ପଛକଥା ଭୁଲି ଏମିତି ନିଶ୍ଚିନ୍ତ ହୋଇ ଯାଇଥିଲ ଯେ,··ବିଛଣା ଧଇଲେ ତେମେ ନିଧୋଉ ନିଦରେ ଶୁଅ । ହେଲେ ମୋ ନିଦ ଭାଙ୍ଗି ଯାଏ । ପଦାକୁ ଉଠି ଆସେ ମୁଁ । ମତେ ଦେଖି ବାବୁ ହଡ଼ବଡ଼େଇ ଯା'ନ୍ତି । "ମନରଖିବାକୁ ପଚରନ୍ତି—ଗୀତା ଶୋଇଚି ସୁନାମା" ? ବାବୁଙ୍କ ମନକଥା ବୁଝିପାରେ ମୁଁ । କୁହେ-ହଁ,··· ଡାକିଦେବି" ? (ଗୀତା ବିଚଳିତ ହୋଇ ଉଠିଲେ ) ପାଟି ଖନି ବାଜିଯାଏ—ଟ୍ରେପ ଟୋକି କହନ୍ତି....ନା, ଥାଉ-ଶୋଇଥାଉ । ଯେମିତି ଆସିଥାନ୍ତି-ସେମିତି ଚୋରଙ୍କ ଭଳି ପାଦ ଚପି ଚପି ଫେରିଯା'ନ୍ତି ।

ଗୀତା—ସୁନାମା !!!

ସୁନାମା—ପୁରୁଷ ପୁଅ ସେ-ଏ ମାୟା ଡୋର କାଟିବା କ'ଣ ସହଜ କଥା ହୋଇଚ ?

ଗୀତା—ମୁଁ ଯିବ ସୁନାମା-ମୁଁ ଯିବ ।

ସୁନାମା—ସେଇ କଥାତ ଫଇଜବେଳୁ ମୁଁ କହୁଚ ! ତମ ଶାଲଟା କଣେକଲ ଦେଇ ! ଯୋଡ଼େଇ ହୋଇ ଆସ,

ଗୀତା—କଣ୍ଠ ଦର୍କାର ନାହିଁ ସୁନାମା···ମୁଁ ସେମିତି ଯିବ—ଆ ।

( କହୁ କହୁ ବାହାରକୁ ଚାଲିଗଲେ । ପଛେ ପଛେ ଗଲେ ସୁନାମା )

## ସପ୍ତମ ଦୃଶ୍ୟ

( ଶାମଙ୍କ ଘର । ପ୍ରଥମ ଅଙ୍କର ସେଇ କକ୍ଷ । ସମୟ ସନ୍ଧ୍ୟା । ଦୃଶ୍ୟ ଆରମ୍ଭରେ ଦେଖାଗଲା କକ୍ଷଟି ପ୍ରାୟ ଅନ୍ଧକାର ! ସନ୍ଧ୍ୟାର ମ୍ଳାନ ଆଲୋକରେ କେବଳ ଅସ୍ପଷ୍ଟ ଭାବରେ ଦେଖା ଯାଉଚି-ଖଟଉପରେ ଗୋଟିଏ ପଥର ମୂର୍ତ୍ତି ଭଳି ଶାମ ବସିଚନ୍ତି । ଆଲୋକ ଅଭାବରୁ ତାଙ୍କ ଚହ୍ନିବାର କୌଣସି ଉପାୟ ନାହିଁ । ଅତି କରୁଣ ତଥା ଆଶଙ୍କା-ମୂଳକ ଯନ୍ତ୍ର-ସଙ୍ଗୀତର ସ୍ୱର ଶୁଣାଯାଉଥାଏ । ବାହାରୁ ମଦନଙ୍କ ସ୍ୱର ଶୁଣାଥିଲା ! ଯେ କୌଣସି କାରଣରୁ ହେଉ ମଦନଙ୍କ ସ୍ୱର ସଙ୍କୋଚ ପୂର୍ଣ୍ଣ )

ମଦନ—(ବାହାରୁ ) ଶାମବାବୁ—ଶାମବାବୁ ।

ବଶୁ—(ବାହାରୁ) କବାଟ ଖୋଲା ଅଛିଟି ବାବୁ ।

ମଦନ—(ବାହାରୁ) ହଁ ! ଖୋଲା ଅଛି ।

ବଶୁ—(ବାହାରୁ) ଚାଲନ୍ତୁ-ଭିତରକୁ ଚାଲନ୍ତୁ !

ମଦନ—(ଡାକ ଡାକ ଆସିଲେ) ଶାମବାବୁ ! ଶାମବାବୁ !

ଶାମ—(କ୍ଷୀଣ ସ୍ୱରରେ) କିଏ ? ମଦନବାବୁ ?

ମଦନ—ହଁ ମୁଁ !....ବଶୁ ବି ଆସିଚି ! ସଞ୍ଜ ହେଇ ଗଲାଣି....ଏଠି ଏମିତି ବସିଚନ୍ତି ? ଲଣ୍ଠନଟା କାହିଁ ? ବଶୁ...ଦେଖିଲ ଲଣ୍ଠନଟା କୋଉଠି ସେ ପାଖରେ ଅଛି-ଲଗେଇ ଆଣ ।

ବଶୁ—ଆଣୁଚି !

ମଦନ—କିଛି ଖବର ପାଇଲେ ଶାମବାବୁ ?

ଶାମ—ଉଁ ?

ମଦନ—କିଛି ଖବର ପାଇଲେ ?....(ଶାମ କିଛି କହୁ ନ ଥାନ୍ତି । ଏ ଅବସ୍ଥାରେ ମଦନ ଯେମିତି ଆଉ କିଛି ପଚାରିବାକୁ ସାହସ କରୁ ନ ଥାନ୍ତି)

ମଦନ—ବଶି !

ବଶି—କଉଚ ଆଜ୍ଞା ! (ଲଣ୍ଠନ ଆଣି ବଶି ଟେବୁଲ ଉପରେ ରଖିଲା । ଆଲୁଅରେ ଦେଖାଗଲା ଶାମ ଦୁଇ ହାତ ଛନ୍ଦି ଭିତରେ ମୁହଁ ଗୁଞ୍ଜି ବସିଚନ୍ତି ! ମଦନ ଯାଇ ଖଟ ଉପରେ ବସିଲେ)

ମଦନ—ଶାମବାବୁ ? (ଶାମ ମୁହଁ ଟେକି ଚାହିଁଲେ)

ମଦନ—କିଛି ଖବର ପାଇ ନାହାନ୍ତି ?

ଶାମ—ଖବର ? କାହା ଖବର ?···କିଏ କଉଚ ?

(ପୁଣି ପୂର୍ବ ପରି ବସିଲେ)

ମଦନ—ପୋଲିସରେ ବୋଧ ହୁଏ ଖବର ଦେଇ ନାହାନ୍ତି ।

(ଶାମ ମୁଣ୍ଡ ହଲାଇ ନାହିଁ କଲେ)

ବଶି—ପୁଲିସରେ ଖବର ଦେଇ କିଛି ଲାଭ ନାହିଁ ଆଜ୍ଞା ! ଏ ସବୁ କଥା ପୁଲିସକୁ ନ ଯିବା ଭଲ ।

ମଦନ—ସେ କଥା ଠିକ୍ ଯେ···ହେଲେ ପୋଲିସ ହାତକୁ ନ ଗଲେ ସ୍ତ୍ରୀର ସନ୍ଧାନ କ'ଣ ଆଉ କେହି ଦେଇ ପାରିବେ ? ଆମ କାହା ଦ୍ୱାରା ଯେ କିଛି ହେଇ ପାରିବ ? ସେ ଆଶା ମୋର ନାହିଁ ! (ଶାମ କିଛି ନ କହି ସେମିତି ବସି ରହିଥାନ୍ତି । ଏ ଦୁହେଁ କେବଳ ପରସ୍ପର ମୁହଁକୁ ଚାହିଁଲେ—କିଛି ସମୟ ପାଇଁ ସମସ୍ତେ ନୀରବ)

ବଶି—(ମଦନକୁ ) ବାବୁ ! କାଲି ରାତିରେ କ'ଣ ଏ କଥା ଘଟିଚି ?

ମଦନ—ହଁ, ରାତିରେ ନୁହେଁ ତ ଆଉ କେତେ ବେଳେ ? ଖାଇ ପିଇ ରାତିରେ ଯିଏ ଯାହାର ଶୋଇବାକୁ ଗଲେ । ସକାଳୁ ଦେଖିଲା ବେଳକୁ ଗୀତା ନାହିଁ—ଆଉ ସେ ସୁନାମାଠି ବି ନାହିଁ ।

ବଶି—ସୁନାମା....?

ମଦନ—ସେଇ ରାଜୁବାବୁଙ୍କ ଘର ରାନ୍ଧୁଣୀ ମ ।

ବଶୁ—ଓ ! ‥ସୁନାମା ଆଉ ବାବୁଙ୍କ ଝିଅ । ଗୋଟାଏ ଘରେ ଶୋଉଥିଲେ ପରା ?

ମଦନ—ହଁ !

ବଶୁ—ଇଏ ତା' ହେଲେ ତା'ର କାମ ?

ମଦନ—ଏ କଥା କ'ଣ କଏ ଜାଣି ପାରୁ ନାହିଁ ? ହେଲେ ସେ କୁଆଡ଼େ ତାକୁ ନେଇ କ କ'ଣ କଲା—ସେ କଥା ତ ପୁଣି ଜାଣିବାର କଥା ! (ଟିକଏ ରହି) ଝିଅଟାକୁ ବା ଦୋଷ ଦବ କଏ ? କାଲି ପୋଉ ଅନର୍ଥ ତାଙ୍କ ଘରେ ଘଟିଲା....

ବଶୁ—କାହା ଘରେ ?

ମଦନ—ସେଇ ରାଜୁ ବାବୁଙ୍କ ଘରେ !

ବଶୁ—ଓ !

ମଦନ—(ଶାମକୁ ) ଏତେ ବେଳେ ଏମିତି ଚୁପ ଚୁପ ହେଇ ବସି ରହିଲେ କ'ଣ ଚଳିବ ଶାମବାବୁ ?

ବଶୁ—ଆଜି ଦିନମାନ ବାବୁଙ୍କର କିଛି ଖିଆ ପିଆ ହେଇ ନାହିଁ ନା କ'ଣ ?

ମଦନ—ଦେଖୁଚ ଏ ଘଟଣା....ଆଉ ଖିଆ ପିଆ କଥା ପଚାରୁଚ ! (ଶାମକୁ ) ତାଙ୍କ ଘରୁ କ'ଣ କେହି ଆସି ନାହାନ୍ତି ?

ବଶୁ—ରାଜୁବାବୁଙ୍କ ଘରୁ ?

ମଦନ—ହଁ !

ବଶୁ—ରାଜୁବାବୁ ପରା ସକାଳେ ଆସିଥିଲେ ।

ମଦନ—ସକାଳେ ଆସିଥିଲେ ମୁଁ ଜାଣେ ! ମୁଁ ଏ ବେଳା କଥା କହୁଚି ! (ଶାମକୁ) ରାଜୁବାବୁ ଆଉ ଆସିଥିଲେ ?

ଶାମ—କଏ ? ରାଜୁ ?

ମଦନ—ହଁ ! ଆସି ନାହାନ୍ତି ଆଉ ?

ଶାମ—କାହିଁକି ଆଉ ଆସିବ ?

ମଦନ—କାଲିକି କିଛି ଖବର ପାଇଥିବେ ।

ଶାମ—ଆଉ କି ଖବର ନେଇ ସେ ଆସିବ ।....ମୁଁ ସତ କହୁଛି ମଦନବାବୁ ! ମୋ କଥା ତମେ ବିଶ୍ୱାସ କର ! ମୁଁ ଜାଣେ··· ସେତେବେଳେ ତୁମେ ସମସ୍ତେ କହୁଥିଲ—ଏତେ ଅଯୋଗ୍ୟ ବାମଣ୍ଠାଏ....ଝିଅଟାକୁ ନେଇ ପର ଘରେ ଗୁଡ଼ି ଆସିଲି !··· ମୋ' କଥା ତମେ ବିଶ୍ୱାସ କର ମଦନବାବୁ....ମୁଁ କେବେ ଏ କଥା ରଜୁକୁ କହି ନ ଥିଲି । ମୁଁ ସେତେବେଳେ ସମୁଦ୍ରରେ ଭସିଲି ପରି ଭାସୁଥାଏ । ଏତିକବେଳେ ରଜୁ ଆସି ଜୋର କରି ଗୀତାକୁ ନେଇଗଲା ! ମୁଁ ଆଉ କ'ଣ କରିଥାନ୍ତି କୁହ ?

ମଦନ—ସେ କଥା ତ ଯାହା ହବାର ହେଇ ଯାଇଛି । ସେଥିରୁ ଆଉ କ'ଣ ମିଳିବ ?

ଶାମ—ରଜୁ ମୋର ଯାହା ଉପକାର କରିଛି···ସେ କଥା ମୁଁ ସାତ ଜନ୍ମ ଯାଏ ଭୁଲି ପାରିବି ନାହିଁ···ହେଲେ ସେଇ ରଜୁ ପାଇଁ ମୁଁ ଆଜି ଏ ଯୋଉ ଧକ୍କା ଖାଇଲି....ସେଥିରୁ ...ସେଥିରୁ....ମୁଁ ଆଉ....ଉଃ (ଗୋଟାଏ ଉତ୍ତେଜନାରେ ଛିଡ଼ା ହବା ସାଙ୍ଗେ ସାଙ୍ଗେ ଭୀଷଣ ଯନ୍ତ୍ରଣାରେ ନିଜ ଛାତିକୁ ଚିପି ଧରି ପୁଣି ଖଟ ଉପରେ ବସି ପଡ଼ିଲେ)

ମଦନ—ଶାମବାବୁ ! କ'ଣ ହଉଛି ଶାମବାବୁ ? (ଚେଷ୍ଟା କରି ମଧ୍ୟ ଶାମ କିଛି କହି ପାରୁ ନ ଥାନ୍ତି)

ମଦନ—ଛାତିକୁ ଖୁବ୍ କଷ୍ଟ ହଉଛି ବୋଧ ହୁଏ ଟିକିଏ ଶୋଇ ପଡ଼ନ୍ତୁ....

ଶାମ—(ପୂର୍ବ କଥାର ଖିଅ ଧରି) ସେଇ ଗୀତା ପାଇଁ ମୁଁ ଏ ଯୋଉ ଧକ୍କା ଖାଇଲି—ସେଥିରୁ ମୁଁ ଆଉ ରକ୍ଷା ପାଇବି ନାହିଁ ମଦନବାବୁ ! କାହିଁକି ?....କାହିଁକି ସେ ଏ ଭୁଲ କଲି ? ଗୀତା ପାଇଁ ସେତେବେଳେ ମୋର ପିନା ବୁଦ୍ଧି ବିବେକ ସବୁ ଲୋପ ପାଇ ଯାଇଥିଲା । ଭଲ ମନ୍ଦ ବିଚାର କରିବାର କ୍ଷମତା ମୋର ପିନା ନ ଥିଲା !....ନହେଲେ ପିଏ ଏ ଭୁଲ କଲା କାହିଁକି ? ପିଏ କ'ଣ ଜାଣି ନ ଥିଲା, ତା' ନିଜ ଘର ସଂସାର କଥା ? କାଲି ସେଇଠି···ତା'ରି ଘରେ ମୁଁ ଅଛି, ଗୀତା ଅଛି ···ସେଇଠି ଗୀତାର ବାହାଘର କଥାରୁ ଯାହା ଯାହା ଘଟିଗଲା !!···ଗୀତାତ କଅଁଳା ପିଲା ନୁହେଁ ମଦନବାବୁ···ଆଃ । (ପୁଣି ଯନ୍ତ୍ରଣାରେ ଅଧୀର ହୋଇ ଗୁଣ୍ଡକୁ ଚାପି ଧରି ଖଟ ଉପରେ ବସି ପଡ଼ିଲେ)

ମଦନ—ଆପଣଙ୍କର କ'ଣ ହଉଛି କୁହନ୍ତୁ ତ ଶାମବାବୁ ? ( ଶାମ କିଛି ନ କହି ସେମିତି ଯନ୍ତ୍ରଣାରେ ଛଟପଟ ହଉଥାନ୍ତି । ସେଠୁ ଫେରିଯିବା ପାଇଁ ଶାମଙ୍କ ଅଲକ୍ଷ୍ୟରେ ବିଶ୍ୱ ମଦନକୁ ଇଙ୍ଗିତ କଲା । କିନ୍ତୁ ମଦନ ସେଥିରେ ରାଜି ହେଲେ ନାହିଁ )

ମଦନ—ଶାମବାବୁ ! କ'ଣ ହଉଛି ଆପଣଙ୍କର ?

ଶାମ— ( ଖୁବ୍ କଷ୍ଟରେ ) ଆଜି ସକାଳଠୁଁ···ମଝିରେ ମଝିରେ— ମୋ ଗୁଣ୍ଡଟା କାହିଁକି······

ମଦନ—ଗୁଣ୍ଡକୁ ଖୁବ୍ କଷ୍ଟ ହଉଛି ?

ଶାମ—ଆଉ ମୁଣ୍ଡ ଭିତରଟା ବି........

ମଦନ—ଆପଣ ଟିକେ ଶୁଅନ୍ତୁ ( ଖଟ ସଜାଡ଼ି ଦେଇ ) ଶୁଅନ୍ତୁ !

ଶାମ—ଶୋଇଲେ ବେଶୀ କଷ୍ଟ ହଉଛି···ଶୋଇ ପାରିଲି ନାହିଁ—

ମଦନ – ଡାକ୍ତର କାହାକୁ ଡାକିବି ? ( ଶାମ ଇଙ୍ଗିତରେ ନିଷେଧ କଲେ । ସେଇ ସଙ୍ଗେ ସାଙ୍ଗେ, ବିଶ୍ୱ ମଦନକୁ ଇଙ୍ଗିତ କରୁଥାଏ । ମଦନ ସେଇପରି ଇଙ୍ଗିତ ଦ୍ୱାରା ଅପେକ୍ଷା କରିବାକୁ କହୁଥା'ନ୍ତି )

ମଦନ— ( ଶାମଙ୍କୁ ) ଖବର କିଛି ମିଳିଲା କି ନାହିଁ ବୁଝିବାକୁ ଚାଲି ଆସିଲି ! ବିଶୁ ବି ମୋ ସାଙ୍ଗରେ ଆସିଲା ! ସାଇର ଲୋକତ ! ତା' ମନ ବି ଦୁଃଖ ।

ବିଶୁ—ଏଇଠି ବାବୁ କ'ଣ ରାଜୁବାବୁର ଭୁଲ ନୁହେଁ ? ତମର କ୍ଷମତା ଅଛି···ପର ଝିଅଟାକୁ ଆଶ୍ରାଦେଇ ରଖିଲ ! ଯା' ବୋଲି ତା ବାହାଘରଟା ତମେ ବନ୍ଦକରି ଦଉଚ ? ଏଥିରୁ ବାହାର ଲୋକେ କ'ଣ ବୁଝିବେ ?

ମଦନ— ଚୁପ୍ ! ସେ ଆଲୋଚନାରୁ ଆଉ କ'ଣ ମିଳିବ ? ଏଣିକି ଆମ ଝିଅଟା କେମିତି ଆମ ଘରକୁ ଫେରି ଆସିବ···ତା' ଦେଖିବାର କଥା । ···କ'ଣ କରିବା କହିଲେ ଶାମବାବୁ ! ଆପଣଙ୍କ ଦେହତ ପୁଣି ଏମିତି ?

ଶାମ—ମୋ ବିପଦ ବେଳେ ତମେ ମୋ ପାଖରେ ଆସି ଠିଆ ହେଇଚ ମଦନବାବୁ ! ସେଇ ମୋର ଯଥେଷ୍ଟ ? —ତମେ ଯାଅ ଏଥର ତମ ଘରକୁ ?

ମଦନ—ଆପଣଙ୍କର ଅବସ୍ଥା ଏମିତି···

ଶାମ—ମୋ କଥା ଆଉ କାହିଁକି ଚିନ୍ତା କରୁଚ ମଦନବାବୁ ! ··· ରାଜୁ ଆଉ ଗୀତା ମତେ ଏ ସଂସାରରେ ରଖେଇ ଦେଇ ନାହାନ୍ତି:—ମୋ' ପାଇଁ ତମେ କାହିଁକି କଷ୍ଟ ପାଉଚ···ଯାଅ ତମେ···ଯାଅ !

ମଦନ—ପୋଲିସକୁ ଖବର ଦବାକୁ ତ ଆପଣ ମନା କରୁଚନ୍ତି ।....ମୁଁ ଯଦି କିଛି ସନ୍ଧାନ ପାଏ,···ସାଙ୍ଗେ ସାଙ୍ଗେ ଆସି ଆପଣଙ୍କୁ ଜଣେଇବି । ରାଜୁବାବୁର ସନ୍ଧାନ ନଇଥିବେ ଯେ ?....ହଉ, ଆମେ ଯାଉଚୁ ! (ଶାମ ମୁଣ୍ଡ ହଲେଇ ସମ୍ମତ ଜଣାଇଲେ । ସେମାନେ ଏଠୁ ଚାଲିଗଲେ ସେମିତି ରକ୍ଷା—ସେଇପରି ଭାବରେ ବୁହେଁ ବିଦାୟ

ନେଲେ । ଅଥଚ ଏମାନେ ଯେ ଗୀତାର ଇତିହାସ ସମ୍ପୂର୍ଣ୍ଣ ଜାଣନ୍ତି— ଏକଥା ଜାଣିବାର ଅବକାଶ ଶ୍ୟାମ ପାଇଲେ ନାହିଁ । ଧୀରେ ଧୀରେ ଶ୍ୟାମ ସିଧା ହୋଇ ବସିଲେ । ଦୃଷ୍ଟି ତାଙ୍କର ଶୂନ୍ୟରେ ନିବଦ୍ଧ )

ଶ୍ୟାମ—ଗୀତା ! ଏମିତି ଅକ୍ଷମ-ଏମିତି ଅପଦାର୍ଥ କ'ଣ ମୁଁ ହୋଇ ପଡ଼ିଲି ମା ଯେ ମୋ ଉପରେ ତୋ'ର ଭରସା ରହିଲା ନାହିଁ — ନା, ଏ ବୟସରେ ମତେ, ଆଉ ଦୁଃଖ କଷ୍ଟ ଦବୁ ନାହିଁ ବୋଲି ତୋ' ଜଂଜାଳରୁ ମତେ ମୁକ୍ତକରିଦେଇ ଚାଲିଗଲୁ !!

(ଏତିକି ବେଳେ ରାସ୍ତା ଉପରେ ଖବର କାଗଜ ବାଲାର ସ୍ୱର ଶୁଣାଗଲା— "ଦୈନିକ ସମ୍ବାଦ—ସମ୍ବାଦ"

( ଖବର କାଗଜ ଡ଼ାକ ଶୁଣି ଶ୍ୟାମ ଚମକି ଠିଆ ହୋଇ ପଡ଼ିଲେ.... ମୁହଁରେ ଆତଙ୍କର ଛାୟା ! ପୁଣି ସ୍ୱର ଶୁଣାଗଲା )

"ପୁରୀ ସହରରେ ଚାଞ୍ଚଲ୍ୟ । ଝିଅର ଦୁର୍ଗୁଣ ଯୋଗୁଁ ବାପର ଆତ୍ମହତ୍ୟା—ଦୈନିକ ସମ୍ବାଦ—ଝିଅପାଇଁ ବାପର ଆତ୍ମହତ୍ୟା

( ଖବର କାଗଜ ବାଲା ଡ଼ାକି ଡ଼ାକି ଚାଲିଗଲା । ଗୋଟାଏ କି ଭୟରେ ଶ୍ୟାମ ଗୋଟାପଣେ ଥରି ଉଠିଲେ, ଅସ୍ପଷ୍ଟ ଭାବରେ ତାଙ୍କ ପାଟିରୁ ବାହାରି ଆସିଲା )

ଶ୍ୟାମ—ବାପର ଆତ୍ମହତ୍ୟା ! ଝିଅପାଇଁ ବାପର ଆତ୍ମହତ୍ୟା !!··· ଆତ୍ମହତ୍ୟା !! ( ଆପେ ଆପେ ହାତ ଦୁଇଟି ତାଙ୍କର ବେକ ପାଖକୁ ଯେମିତି ଉଠିଗଲା—ଯେମିତିକି ନିଜ ହାତରେ ସେ ବେକଟିକୁ ଚପି ଦେବେ ! ଠିକ୍ ଏତିକି ବେଳେ ଆସିଲା ରାଜୁ )

ରାଜୁ—ମଉସା ! ···

ଶ୍ୟାମ— ( ଶ୍ୟାମ କିଛି କହି ପାରିଲେ ନାହିଁ )

ରାଜୁ—ମୁଁ ସକାଳବେଳା ଆସିଥିଲି—ଆପଣ ନଥିଲେ—

ଶ୍ୟାମ—ରାଜୁ ? ( ଆଖିରୁ ତାଙ୍କର ଝର ଝର ହୋଇ ଲୁହ ବୋହୁଥାଏ )

ଶାମ—ମାସ ଗୋଟାଏ ହେଇନି—ସେଦିନ ଏମିତି ତୁ ଏଠିକି ଆସିଥିଲୁ । ତତେ ଦେଖି ମୋ' ମଲା ଦେହରେ ମୁଁ ଜୀବନ ଖୋଜି ପାଇଥିଲି—ଗୀତା ଆସି ଏଇଠି ତୋ' ପାଦତଳେ ମୁଣ୍ଡ ପିଟି ଦେଇଥିଲା ।

ରଜୁ—ମୁଁ ଆପଣଙ୍କୁ କଥା ଦେଉଛି ମଉସା—ଗୀତାକୁ ମୁଁ ଯେମିତି ହେଲେ ଖୋଜିଆଣି ଦେବି !

ଶାମ—ଖୋଜି ଆଣିଦବୁ ?—ଗୀତା ପୁଣି ଫେରି ଆସିବ ? କାହିଁକି ଆଉ ଆସିବ ସେ ? ଥରେ ପରା ଫେରି ଆସିଥିଲା—ସେଦିନ ଏଇଠି ମୋ ମୁହଁକୁ ନ ଚାହିଁ ସେ ତୋ ପାଦତଳେ ଆଶ୍ରୟ ନେଉଥିଲା ? ···ଫଳ ଏବେ କ'ଣ ହେଲା ? ....ଆଜି ଏଠି ତୁ ଅଛୁ—ମୁଁ ଅଛି-ଆଉ ଗୀତା···ଗୀତା—କାହିଁ ?
( କାନ୍ଦୁଥାନ୍ତି )

ରଜୁ—ମୁଁ ମାନୁଛି ମଉସା—ସବୁ ଦୋଷ ଆମର । ଆପଣ ଚାହାନ୍ତୁ ଦେଖିବେ—ଏଇ ଘଟଣାରୁ ଘରେ ସମସ୍ତଙ୍କ ମୁହଁରେ ଯେମିତି କାଳି ବୋଳି ହେଇ ଯାଇଛି ।

ଶାମ—ମିଛ କଥା । କାଲି ତମେ ସମସ୍ତେ ମିଶି ତା' ମୁହଁରେ କାଳି ବୋଳି ଦେଲ ବୋଲି ତାର ଫଳ ଆଜି ସେ ଭୋଗୁଛି—ମୁଁ ଭୋଗୁଛି ।

ରଜୁ—ଆପଣଙ୍କ ଆଗରେ ଠିଆହେଇ କଥା କହିବାର ମୁହଁ ଆଜି ମୋର ନାହିଁ-ମଉସା ! ହେଲେ ଆପଣ ବିଶ୍ୱାସ କରନ୍ତୁ—ଗୀତା ଆମକୁ ଛାଡ଼ି ଚାଲିଯିବ—ଏକଥା ଯଦି ମୁଁ ସ୍ୱପ୍ନରେ ସୁଦ୍ଧା ଭାବିଥା'ନ୍ତି, ତା'ହେଲେ···

ଶାମ—ମତେ ଆଉ କୈଫିୟତ ଦବାର ତୋ'ର କିଛି ନାହିଁ ରଜୁ । ମୁଁ କହିବି, ଏଥିରେ ତୁ ଦୋଷୀ···ହଁ, ତୁଇ ଏକା ଦୋଷୀ··· ଆଃ··· ( ପୁଣି ଯନ୍ତ୍ରଣାରେ ଅସ୍ଥିର ହେଇ ପଡ଼ିଲେ )

ରାଜୁ—ମୁଁ ମାନୁଚି ମଉସା—ସବୁ ଦୋଷ ମୋର । କିନ୍ତୁ ଆପଣ ମୋତେ ଉତ୍ତେଜିତ ହୁଅନ୍ତୁ ନାହିଁ । ଆପଣଙ୍କ ସ୍ୱାସ୍ଥ୍ୟ ଆଉ ମୁଣ୍ଡର ଅବସ୍ଥା ଯାହା—ଡାକ୍ତର ବାରମ୍ବାର ମନା କରିଚନ୍ତି—ଆପଣ ମୋତେ ଉତ୍ତେଜିତ ହୁଅନ୍ତୁ ନାହିଁ । ···

ଶାମ—ହିଁଅଁଟା ମୋର ଯେତେବେଳେ ଥରେ ଘରୁ ଗୋଡ଼କାଢି ଯାଇଥିଲି—ଦୁନିଆଁ ଆଖିରେ ସେ ହୋଇଥିଲି କଳଙ୍କିନୀ । ତା' ପାଇଁ କୋଉଠୁ କି ରାଜପୁତ୍ର ବର ଖୋଜିଆଣି ଦେଇଥା'ନ୍ତି ବୋଲି ଏ ବାହାଘର ପ୍ରସ୍ତାବ ତୁ ଭାଙ୍ଗି ଦେଲୁ ? କାହିଁକି— ଏଥିରେ ତୋ'ର କି ସ୍ୱାର୍ଥ ଥିଲି ? ···କି ସ୍ୱାର୍ଥ— ? ( ଯନ୍ତ୍ରଣାରେ ଶାମ ଆହୁରି ଅସ୍ଥିର ହୋଇ ଉଠୁଥା'ନ୍ତି—କିନ୍ତୁ ସେଥିପ୍ରତି ଯେମିତି ତାଙ୍କର ଖାତିର ନ ଥାଏ )

ରାଜୁ— ( ଚିତ୍କାର କରି ) ମଉସା !

ଶାମ—ତୁ ମୋର ଖୁବ୍ ଉପକାର କରିଥିଲୁ ରାଜୁ—ସେଥିପାଇଁ, ମୁଁ ଦିନ ରାତି ତୋ'ର ମଙ୍ଗଳ କାମନା କରି ଭଗବାନଙ୍କୁ ଡାକିଚି । ....ଆଉ ଆଜି ତୁ ମୋର ଘୋର ସର୍ବନାଶ କଲୁ—

ରାଜୁ—ମଉସା···ଆପଣ ସ୍ଥିର ହୁଅନ୍ତୁ ମଉସା···

ଶାମ—ସେଥିପାଇଁ···ମୁଁ କ'ଣ ତତେ···ଅଭିଶାପ ଦେବି···ଅଭିଶାପ··· ଅଭି···ଆଃ···ଗୀତା···ଗୀତା ·· ( ଖଟ ଉପରେ ଢଳି ପଡ଼ିଲେ )

ରାଜୁ—ମଉସା···ମଉସା; ଏ କ'ଣ ହେଲା ? ମଉସା !! ( ଶାମଙ୍କର ମୃତ ଦେହ ଖଟ ଉପରେ ଲୋଟି ପଡ଼ିଲା । ଆଉ ଖଟ ତଳକୁ ଝୁଲି ପଡ଼ିଲା ଗୋଟିଏ ହାତ । ରାଜୁ ପଥର ମୂର୍ତ୍ତି ଭଳି ଠିଆ ହୋଇଥାଏ )





# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ଏକ ମନୋରମ ପୃଷ୍ଠଭୂମି ଉପରେ ଗୃଳଚ ନୃତ୍ୟ । ନୃତ୍ୟର ପରିପାଟୀ ଏଥର ପ୍ରଧାନ ଆକର୍ଷଣନୁହେଁ —ଆକର୍ଷଣ ହଉଚ—ଗୀତା । ଗୀତାହିଁ ଏ ନୃତ୍ୟରେ ପ୍ରଧାନ ଅଂଶ ଗ୍ରହଣ କରଚ । ଏକ କଳା ଅନୁଷ୍ଠାନ ତରଫରୁ ପରୋକ୍ଷ ଭାବେ ଏ ନୃତ୍ୟ ଆୟୋଜନ କରା ଯାଇଛୁ ।

ନୃତ୍ୟ ଶେଷ ହେଲ । ସେଇ ସଙ୍ଗେ ସଙ୍ଗେ ଦୃଶ୍ୟ ପଟ୍ଟ ରୂପାନ୍ତରିତ ହେଲ ଏକ ଅଳନ୍ଦରେ)

—ଅଳିନ୍ଦ—

(ଝୁଙ୍କ୍ ମନ ଖୁସିରେ ଗୋଟିଏ ଦଗରୁ ଆସୁଚନ୍ତି ମଦନ ! ସାମନାରେ ଭେଟିଲେ ବନ୍ଧୁକ)

ବନ୍ଧୁ—କ'ଣ ହେଲା ଯାର୍ ?

ମଦନ—(ବିରକ୍ତ ହେଇ) କୋଉ କଥା କ'ଣ ହେଲା ?

ବଶୁ—ଏଇ ନାଚ କଥା ?

ମଦନ—କ'ଣ ହୋଇଥିବ ବୋଲି ତମେ ଭାବୁଚ ?

ବଶୁ—ନାଚ ତ ଭାରି ବଢ଼ିଆ ହେଲା—

ମଦନ—କ'ଣ ତା' ହେଲେ କହୁଚ ତମେ ?

ବଶୁ—ମୁଁ କହୁଚି କହୁ ନାହିଁ ଯେ···ସୁଜନବାବୁ କ'ଣ କହିଲେ ?

ମଦନ—ମୁଁ ବୁଝି ପାରୁନି ବଶୁ, ଇଏ ଆମ ଜାତିର ଦୋଷ କି ଦେଶର ଦୋଷ, କି ଭାଗ୍ୟର ଦୋଷ ! ତମେ ଏ ଅନୁଷ୍ଠାନର ଜଣେ ଦାୟିତ୍ୱ-ସମ୍ପନ୍ନ କର୍ମୀ ।....ନାଚ ଦେଖି ସୁଜନବାବୁ କ'ଣ କହିଲେ ନ କହିଲେ, ସେ କଥା ଜାଣିବାକୁ ତମର ଏମିତି ଅସ୍ଥିର ହବା କ'ଣ ଉଚିତ ?

ବଶୁ—ଏଇଟା କ'ଣ ମୋର ଦୋଷ ହୋଇଗଲା ସାର !

ମଦନ—ଦୋଷ ନ ହୋଇଥିବାର ପ୍ରମାଣ ତମେ ଦେଇ ପାରିବ ? ସୁଜନବାବୁ କିଏ ତମେ ଜାଣ ?

ବଶୁ—ଜାଣେ ! ବଡ଼ଲୋକ—ପଇସାବାଲା···ଫିଲମ୍ କମ୍ପାନୀର ମାଲିକ ।

ମଦନ—ଏତେ କଥା ଜାଣିଚ ଯଦି ଗୋଇନ୍ଦାଗିରି କଲା ଭଳି ତାଙ୍କ ପିଛା ତମେ ଧରିଚ କାହିଁକି ?

ବଶୁ—ମୁଁ ତ ତାଙ୍କ ପାଖ ସୁଦ୍ଧା ମାଡ଼ି ନାହିଁ—ତାଙ୍କ ପିଛା ଧରିଲି କେମିତି ?

ମଦନ—ତାଙ୍କ ପିଛା ନ ଧଇଲେ ମୋ ପିଛା ଧରିଚ ! .... ଏ ସବୁ ଦେଖି ଶୁଣି ସେ କ'ଣ ଯେ ଭାବୁଥିବେ ?

ବଶୁ—ସିଏ ତ ଆଜ୍ଞା ଯାଇ ବୁଦ୍ଧମା ଚୌକି ଛକରେ ହେବେଣି··· ଆଉ ଭାବବେ କ'ଣ ?

ମଦନ—ମତେ ଆଉ ବିରକ୍ତ କରନା କହି ଦଉଚି । ମୋର ଅଫିସ ବେଳ ହୋଇ ଗଲାଣି ।·· ପୁଣି ଓକିଲ ପାଖକୁ ଟିକିଏ ଯିବି !

ବଶୁ—ଏ କଥା ତା' ହେଲେ ସାର୍ ସତ ?

ମଦନ—କେଉଁ କଥା ?

ବଶୁ—ପାଞ୍ଚ ହଜାର ?

ମଦନ—କ'ଣ ପାଞ୍ଚ ହଜାର ?

ବଶୁ—ଗୀତା ଦେଈଙ୍କୁ ସୁଜନବାବୁ ପସନ୍ଦ କରିଚନ୍ତି ?

ମଦନ—ବଶୁ !

ବଶୁ—ଗୀତା ଦେଈ ଫିଲ୍ମକୁ ଯିବେ···ଆଉ ପାଇବେ ପାଞ୍ଚ ହଜାର ଟଙ୍କା ।

ମଦନ—ସେଥିରେ ତମର କ'ଣ ଅଛି ?

ବଶୁ—ମୁଁ ସେଇ କଥା କହୁଚି ସାର୍ ଯେ ଏଥିରେ କାହାର କ'ଣ ଅଛି ? ସୁଜନବାବୁ ଯୋଉ ପାଞ୍ଚ ହଜାର ଟଙ୍କା ଦେବେ.... ତାକୁ ନବ କିଏ ?

ମଦନ—ନବ ଗୀତା !

ବଶୁ—ତା' ହେଲେ ଆପଣ ସାର୍ ଆଉ କଷ୍ଟ କରି ଓକିଲଙ୍କ ଘରକୁ ଯାଉଚନ୍ତି କାହିଁକି ? ଅଫିସ ବେଳ ହେଇଗଲାଣି—ଆପଣ ଅଫିସ ଯା'ନ୍ତୁ ।....ମୁଁ ଓକିଲଙ୍କ ଘରକୁ ଯାଉଚି । ଗୀତା ଦେଈଙ୍କ ନାଁରେ ଗୋଟାଏ ଚିଠା ତିଆରି ହବ ତ ?···ସେତକ କ'ଣ ମୁଁ କରେଇ ଦେଇ ପାରିବି ନାହିଁ....

ମଦନ—ଓ ! ତମେ ତା' ହେଲେ ଏତେ ଦୂର ଚିନ୍ତା କଲଣି । ଆଚ୍ଛା ତମେ କ'ଣ କରି ପାରିବ ନ ପାରିବ—ସେ କଥା ମୁଁ ଆଜି ବୁଝୁଚି....ମୁଁ ବର୍ତ୍ତମାନ ଆସେଁ-(ଗ୍ରୀଲଗଲେ)

ବଶୁ—ହଉ ! ଆସନ୍ତୁ ଆଜି ସବୁ ବୁଝାବୁଝି ହେଇଯିବ ! (ଯିବାକୁ ବାହାରିଲା ବେଳେ ମନୋଜ ଆସିଲା)

ମନୋଜ—ନମସ୍କାର ।

ବଶୁ—ନମସ୍କାର ! କାହାକୁ ଖୋଜୁଚନ୍ତି ?

ମନୁ—ମଦନବାବୁ ଅଛନ୍ତି ?

ବଶୁ—ଏଇତ—କୁଆଡ଼େ ବାହାରିଚନ୍ତି । ଡାକ ଦେବ ?

ମନୁ—ନା—ଥାଉ !

ବଶୁ—ତାଙ୍କ ପାଖରେ କାମ ଥିଲନା ?

ମନୁ—ଠିକ୍ ତାଙ୍କ ପାଖରେ ନୁହେଁ ।

ବଶୁ—ଆଉ ତେବେ କାହା ପାଖରେ ?

ମନୁ—ମୋର ଗୀତା ଦେଈଙ୍କ ପାଖରେ କାମ । ଦେଖା ହୋଇ ପାରିବ ?

ବଶୁ—ଆପଣ କିଏ ଆଜ୍ଞା ?

ମନୁ—ମତେ କ'ଣ ଆପଣ ଚିହ୍ନି ପାରିବେ ?

ବଶୁ—ଚିହ୍ନି ପାରୁନାହିଁ ସତ, —ହେଲେ ଦୋ ଦୋ ଚିହ୍ନାପରି ମନେ ହଉଚି ।

ମନୁ—ନା—ତା'ବି ମନେ ହଉ ନଥିବ । କେବେତ ଆମର ଦେଖା ହୋଇନ ।

ବଶୁ—ଗୀତା ଦେଈଙ୍କ ପାଖରେ କି କାମ ଅଚ୍ଛି ଆପଣଙ୍କର ?

ମନୁ—ସେ କଥା ଆପଣଙ୍କୁ କହି ଲାଭ ବା କ'ଣ ?

ବଶୁ—ଆପଣ କ'ଣ···ଫିଲମ୍ କାମରେ ଆସିଚନ୍ତି ?

ମନୁ—ଫିଲ୍ମ ? ହଁ, ମନେ କରନ୍ତୁ—

ବଶୁ—ମନେ କରିବାର ଆଉ କଚ୍ଛି ନାଇଁ ! ଆପଣଙ୍କୁ ଦେଖି ସେ କଥା ମୁଁ ବୁଝିପାରିଚି । ଆସନ୍ତୁ....ଦେଖା ହେବ ! [ ଦୁହେଁ ଉପସ୍ଥିତ ହେଲେ ପୂର୍ବର ସେଇ କକ୍ଷଟିରେ । କକ୍ଷର ପଶ୍ଚଭୂମି ଅପରିବର୍ତ୍ତିତ । କିନ୍ତୁ ଏ ମଧ୍ୟରେ ସେଠ ଟେବୁଲ, ଚୌକି ଆଦି ସଜ୍ଜିତ ହୋଇଚି । ଏହାଯେ ଗୋଟିଏ କଳା ଚର୍ଚ୍ଚାର ପ୍ରତିଷ୍ଠାନ—ତା'ର ପ୍ରମାଣ କକ୍ଷଟିରୁ ମିଳୁଚି ]

—କକ୍ଷ—

ବିଶୁ—ଦୟାକର ଆପଣ ଏଇଠି ବସନ୍ତୁ । ମୁଁ ଗୀତା ଦେବୀଙ୍କୁ ଖବର ଦଉଚି । ( ବିଶୁ ଭିତରକୁ ଗଲା । ମନୋଜ କକ୍ଷରେ ପଦଚାରଣ କରୁଥାଏ । ହଠାତ୍ ଗୋଟିଏ ଝିଅର ଆବିର୍ଭାବ ହେଲା । ଝିଅଟିର ନାମ ଜେମା । ତା' ଦେହର ଶାଢୀ, ବ୍ଲାଉଜ୍, ହାତର ଚୂଡ଼ି, ପାଦର ଜୋତା, ସବୁଥିରେ ବହୁ ବିଭିନ୍ନ ରଙ୍ଗର ଅତି ଅପ୍ରାକୃତିକ ଏବଂ ଅରୁଚିକର ସମାହାର ଦେଖିବାକୁ ମିଳେ—ଆଉ ଝିଅଟିର କଥାବାର୍ତ୍ତା ଓ ବ୍ୟବହାରରେ ମିଳେ ତା' ନିର୍ବୋଧତାର ପରିଚୟ )

ଜେମା—ନମସ୍କାର ।

ମନୁ—ନମସ୍କାର । ( ମନୋଜ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଜେମକୁ ଚାହିଁଥାଏ—କିନ୍ତୁ ଜେମା କେବଳ ନିରର୍ଥକ ଅଙ୍ଗ ଭଙ୍ଗୀ କରିବାରେ ଲାଗିଥାଏ ।

ଜେମା—କେମିତି ଲାଗିଲା ଆଜ୍ଞା ? ମୋ' ନାଚ କଥା ମୁଁ କହୁଚି । —ଏଇ ଯୋଉ ନାଚ ବର୍ତ୍ତମାନ ହେଲା—ସୁଜନ ବାବୁ ଦେଖୁଥିଲେ ସେଇ ନାଚରେ ମୁଁ ନାଚୁଥିଲି । ....ଆପଣ ଦେଖୁଥିଲେଟି ?

ମନୁ— ( ମନରକ୍ଷା କରିବାକୁ ଚେଷ୍ଟା କରି ) ଓ—ହଁ । ତମ ନାଚ ? ଖୁବ୍ ଭଲ ହେଇଚି ।

ଜେମା—ଜାଣିଚନ୍ତି ନା ସାର୍ ! ଦି' ମାସତଳେ ଏଇ ନାଚଟା ଆମେ ଶିଖିଲୁ । ପ୍ରଥମେ ଆମର ସୋ ହୋଇଗଲା—ତାଳଚେରରେ । ସେଠି ମୁଁ ନାଚିଲି । ତା'ପରେ ଭୁବନେଶ୍ୱରରେ ଯେଉଦିନ ସୋ ହୋଇଗଲା ସେଦିନ ଆମ ସାର୍ ମତେ କାଟିଦେଇ ମୋ- ଜାଗାରେ ଲିଲିକୁ ନେଲେ ।

ମନୁ—କାହିଁକି ?

ଜେମା—ସେ କାନ୍ଦିଲା ।

ମନୁ—କାନ୍ଦିଲା ? ନାଚିବ ବୋଲି କାନ୍ଦିଲା ?

ଜେମା—ହଁ ଅପା ! ସକାଳୁ ସଞ୍ଜଯାଏ ଖାଲି ବସି ବସି କାନ୍ଦିଲି ।
ମନୁ—ତମେବତ ସେମିତି ବସି ବସି କାନ୍ଦି ପାରିଥାନ୍ତ ?
ଜେମା—ନାଇଁ ସାର୍—ପାରିଲି ନାଇଁ ।
ମନୁ—କାନ୍ଦି ପାରିଲ ନାଇଁ ?
ଜେମା—ନା—। ପିଲାଦିନୁ ମୁଁ ଘର ଅଳିଅଳ—ଘର ଶେଷବସରରେ ବଢିଚିତ ? କାନ୍ଦ କ'ଣ ମୁଁ ମୋଟେ ଜାଣେ ନାଇଁ । ଥିଏଟରରେ ମୁଁ କ'ଣ କାନ୍ଦୁଣୀ ପାର୍ଟ ମୋଟେ କରି ପାରିବ କି ? ପାରିବ ନାଇଁ ।
ମନୁ—ବୁଝିଲି । ତେବେ ଏଥିରେ ଦୁଃଖ କରିବାର ବା କ'ଣ ଅଛି ! ତମେ ଢାଳଚେରରେ ନାଚିଲ ସେ ଭୁବନେଶ୍ୱରରେ ନାଚିଲ ।
ଜେମା—ଛି—ଛି-ଛି—ଭୁବନେଶ୍ୱରରେ 'ଶୋ' ଯୋଉ ବାଜେ ହେଲା । ସେଇଠା ନଳ ଗୋଡ଼ଟାଏ ନାଚିବ କ'ଣ ? ତା'ଆର ଉପରେ ବୁଲି ଆସିଲା ବେଳକୁ ସବୁ ଷ୍ଟେପେଙ୍ଗ ଭୁଲ୍ । ଲୋକେ ତାଳିମାରି ହସିଲେ ।
ମନୁ—ହସିଥିବେ । ମତେ ତ ଏଠି ହସ ମାଡୁଚି—ଲୋକେ ନହସି ଥିବେ କାହିଁକି ?
ଜେମା—ହେଲେ ଲାଭ ହେଲା କ'ଣ ? ଗଲା ମାସରେ ସୁକିନ୍ଦାରେ 'ଶୋ' ହେଲା ଯେ, ସେଠିକି ପଠେଇ ଦେଲେ ମତେ ।....ଆଉ ପୁଣି 'ଶୋ'ରେ ନାଚିଲି ସିଏ—ପୁଣି ଆଜ—ଏଠି ଯୋଉ 'ଶୋ' ହେଲା, ସୁଜନବାବୁ ଦେଖିଲେ—ସେଥିରେ ସିଏ ନାଚିବ ବୋଲି ଆଗରୁ ଗୋଡ଼ ଟେକି ବସିଥିଲା ।
ମନୁ—ସେଠି ହେଲା କ'ଣ ?
ଜେମା—ନାଚି ପାରିଲା ନାଇ !
ମନୁ—କାଇଁକି ?
ଜେମା—ଗୋଡ଼ ଭାଙ୍ଗି ଗଲା !

ମନୁ—ଗୋଡ ଭାଙ୍ଗିଗଲା ?

ଜେମା—ହଁ ସର ! କାଲିରାତି ତିନିଟାରୁ ଉଠି ଏକା ଏକା ନାଚ ପ୍ରାକ୍‌ଟିସ୍ କରୁଥିଲି । ଗୋଡ଼ ଖସିଯାଇ ଗୋଡ଼ ଭାଙ୍ଗିଗଲା । ଆଉ ନାଚିବ କ'ଣ ? ମୁଁ···ନାଚିଲି ।

ମନୁ—ଭଲ ।—ଖୁବ୍ ଭଲ ନାଚିଚ ତମେ ! ବେଶ୍ ନାଚିଚ !

ଜେମା—( ଗେହ୍ଲେଇ ହୋଇ ) ସାର୍ ।

ମନୁ—କ'ଣ କହୁଚ ?

ଜେମା—ମୁଁ କ'ଣ ଫିଟ୍ ହେବ ନାହିଁ ?

ମନୁ—ଫିଟ୍ ?

ଜେମା—ଏଇ ଫିଲ୍ମରେମ ? ଆପଣ ଫିଲ୍ମ କରୁଚନ୍ତି ସର ? ମୁଁ ଫିଲ୍ମରେ ଫିଟ୍ ହେବନାହିଁ···ସାବିତ୍ରୀ ନାଟକରେ ମୁଁ ପାର୍ଟ କରୁଥିଲି । ମୋ ପାର୍ଟ ଦେଖି—ସେ କିଏ ଜଣେ ବଡ଼-ଅଫିସର—ଏମିତି ଖୁସି ହେଇ ଗଲେ ଯେ···ଦୋକାନରୁ—ସାଙ୍ଗେ ସାଙ୍ଗେ ହାରଟାଏ କିଣିଆଣି ମତେ ପ୍ରେଜେଣ୍ଟ ଦେଲେ । ଏଇ ହାରଟା—ମୁଁ ପିନ୍ଧିଚ ମ । ମୁଁ କ'ଣ ଫିଟ୍ ହେବ ନାହିଁ ?

ମନୁ—ଦେଖ, ମୋ ଫିଲ୍ମ୍ କଥା ମୁଁ ଏତେ ଚଞ୍ଚଳ ଭାବିପାରୁ-ନାହିଁ । ···ତେବେ—

ଜେମା—ଆଉ କ'ଣ ସାର୍ ?

ମନୁ—ତମର ଏଇ ଯୋଉ ଲୁଗା—ଜାମା—ଜୋତା ? ଏ ସବୁ ତମେ ପସନ୍ଦ କରି କିଣିଚ ?

ଜେମା—ହଁ ସାର ! ମୋର ସବୁ ଜିନିଷ ମୁଁ ନିଜେ ପସନ୍ଦ କରି କିଣେ··· । ସୁନ୍ଦର ହେଇନି ? ନିଜେ ପସନ୍ଦ କରି କିଣେ··· । ସୁନ୍ଦର ହେଇନି ?

ମନୁ—ଖୁବ୍ ସୁନ୍ଦର ହୋଇଛ··· । ମୁଁ ଗୋଟାଏ ରଙ୍ଗ କଂପାନୀକୁ ଜାଣେ, ସେମାନେ 'ସପ୍ତ ରଙ୍ଗର ଆବିଷ୍କାର' ବୋଲି ଗୋଟାଏ ରଙ୍ଗୀନ୍ ଫିଲମ୍ କରୁଚନ୍ତି ? ତାଙ୍କୁଇ ମୁଁ ତମକଥା କହିବ !

ଜେମା—ମୁଁ ସେଥିରେ କ'ଣ କରିବ ସାର୍ ? ହିରୋଇନ୍ ହେବ ?

ମନୁ—ନିଶ୍ଚୟ । ତମର ଏଇ ବେଶ ପୋଷାକ ପିନ୍ଧି ତମେ ସେ ଫିଲମ୍‌ରେ ବାହାରିଲେ ଲୋକେତ ବୁଝିବେ ଯେ ସ୍ୱୟଂ ତମଭିତି ସପ୍ତରଙ୍ଗର ଆବିଷ୍କାର କରା ହୋଇଚ । ଯେ' ··କ'ଣ କମ୍ ବାହାଦୁରୀ........

ଜେମା—ଆପଣଙ୍କ ଦୟା ସାର । ଆପଣଙ୍କ ଦୟା ।

ମନୁ—ଆଚ୍ଛା, ତମେ ଟିକଏ ଦୟାକରି ଦେଖିଲ—ଗୀତା ଦେଈ କୁଆଡ଼େ ଗଲେ !

ଜେମା—ଗୀତା ! ଏଇ ପରା ଗୀତା ଆସିଲାଣି । ମୁଁ ରହିବ ନା ଯିବ,···

ମନୁ—ତମେ ଯାଅ ।

ଜେମା—ହେଲେ ମୋ' କଥା ଭୁଲିବେନି ସାର୍—ମନେ ରଖିଥିବେ ।

( ଜେମା ଚାଲିଗଲା । ପ୍ରାୟ ପରେ ପରେ ଆସିଲା ଗୀତା । ଏଠି ଏ ଅବସ୍ଥାରେ—ଏ ପରିସ୍ଥିତିରେ ସେ ମନୋଜକୁ ଭେଟିଚ—ସେଥିପାଇଁ ତା' ମନରେ ଆଦୌ ସଙ୍କୋଚ କିମ୍ବା ଦ୍ୱିଧା ନାହିଁ । ବେଶ୍ ସହଜ ଓ ସ୍ୱଚ୍ଛନ୍ଦ ଭାବରେ ସେ ମନୋଜର ସମ୍ମୁଖୀନ ହେଲା )

ଗୀତା—ଆରେ ! ମନୋଜବାବୁ—ଆପଣ ? ଆପଣ ଏଠିକି ଆସିବେ —ଏ ଆଶାତ ମୁଁ କରି ନଥିଲି । (ମନୋଜ ସ୍ଥିର ଦୃଷ୍ଟିରେ ଚାହିଁ ରହିଥାଏ ) ଆଖିର ପଲକ ନ ପକାଇ ଏମିତି ଚାହିଁ ରହିଚନ୍ତି ଯେ ? କ'ଣ ଦେଖୁଚନ୍ତି ? ···ବୁଝିଲି । ଆପଣ ନିଶ୍ଚୟ ଆଶା-କରିଥିଲେ—ଆପଣଙ୍କୁ ଏଠି ଦେଖି ଲାଜରେ ମୋ ମୁହଁ କଳା ପଡ଼ିଯିବ—ସଙ୍କୋଚରେ ପାଦ ଅଟକି ଯିବ—ଦୁଃଖରେ ଝରି ପଡ଼ିବ ଲୁହର ଧାର । ନା ସେ ଅବସ୍ଥା ଆଉ ମୋର ନାହିଁ ।

ଠିକେ ରୁହନ୍ତୁ—ମୁଁ ଆଗେ ଆପଣଙ୍କ ପାଇଁ ଚା'ର ବନ୍ଦୋବସ୍ତ କରେଁ—( ଭିତରକୁ ଲକ୍ଷକରି ) ଲିଲି—ଜେମା—କିଏ ବଶୁ…
( ବଶୁ ଆସିଲା )

ବଶୁ—ଦେଈ !

ଗୀତା—ସୁନାମାକୁ କୁହ ବାବୁଙ୍କ ପାଇଁ ଚା' ଆଣିବ ! ( ବଶୁ ଚାଲିଗଲା ) ବଶୁକୁ ଚିହ୍ନିଲେ ତ ?

ମନୁ—ଚିହ୍ନିଲି ! କିନ୍ତୁ ସେ ମତେ ଚିହ୍ନି ପାରିନି !

ଗୀତା—ମୋର ଯେତେବେଳେ ଚରମ ଦୁର୍ଭାଗ୍ୟ—ସେତେବେଳେ ସେ ହାତରେ ଛୁରୀଧରି ରାତିଅଧରେ ମୋ ଉପରେ ଅତ୍ୟାଚାର କରିବାକୁ ବାହାରିଥିଲା ! ଆଜି ଏଠି କିନ୍ତୁ—ସେ ମୋର ଆଜ୍ଞାବହ-ଦାସ ।

ମନୁ—ସୁନାମା ବି ଏଠି ଅଛି ?

ଗୀତା—ସେ ପୁଣି ଯିବ କୁଆଡ଼େ ? ସିଏତ ମୋର ପରମ ଉପକାରୀ ବନ୍ଧୁ—ପରମ ଶୁଭାକାଂକ୍ଷୀ ।

ମନୁ—ଗୀତା !

ଗୀତା—କୁହନ୍ତୁ ?

ମନୁ—ପ୍ରାୟ ଛ' ମାସ ତଳର ସେଇ ରାତି—ସମସ୍ତଙ୍କ ଆଖିରେ ଧୂଳିଦେଇ ତମେ ଚାଲି ଆସିଲ ।

ଗୀତା—ଭାରି ସୁନ୍ଦର କଥା କହୁଚନ୍ତି ତ ? ଆଖିରେ ଧୂଳିଦେଇ ଆସିଲି !! ଆଚ୍ଛା ଆଚ୍ଛା—କୁହନ୍ତୁ ।

ମନୁ—ଛ' ମାସ ପରେ ତୁମ ସହିତ ମୋର ଏ ପ୍ରଥମ ଦେଖା…

ଗୀତା—ଘ୍ୱା' ଭିତରେ ଆପଣ ବୋଧହୁଏ କଷ୍ଟକରେ ନ ଥିଲେ ?

ମନୁ—ନା—ତମେ ଚାଲି ଆସିବା ପରେ ଦିନ, ମୁଁ କଟକ ଛାଡ଼ି ଚାଲି ଆସିଥିଲି !

ଗୀତା—ସର୍ବନାଶ, ଆପଣଙ୍କ ନାଆଁରେ ତାʼ ହେଲେ ଏ ବଦନାମ ଉଠି ନଥିଲା ତ ?

ମନ୍ଦୂ—କି ବଦନାମ ?

ଗୀତା—ଆପଣ ମତେ ଶିଖେଇ ନେଇ କୁଆଡ଼େ ଚାଲି ଯାଇଚନ୍ତି···

ମନ୍ଦୂ—ଗୀତା !

ଗୀତା—ମୋର ବ୍ୟବହାର ଦେଖି—ମୋ ମୁହଁରୁ ଏସବୁ କଥା ଶୁଣି, ଆପଣ ଖୁବ୍ ଆଶ୍ଚର୍ଯ୍ୟ ହେଇ ଯାଉଚନ୍ତି, ନା ?

ମନ୍ଦୂ—ଏ ପର୍ଯ୍ୟନ୍ତ ତମ ସମ୍ବନ୍ଧରେ ମୁଁ କିଛି ହେଲେ ଚିନ୍ତା କରି ପାରୁନି ଗୀତା ।

ଗୀତା—ରାତି ଦʼଟା ବେଳେ ଘର ଛାଡ଼ିଲି ।....ମୋର ମନେ ଅଛି···ସେଦିନ ଅମାବାସ୍ୟାର ରାତି । ମୋʼ ଜୀବନ ଆକାଶରେ ସେଦିନ କିନ୍ତୁ ମୁଁ ଅମାବାସ୍ୟା—ପୂର୍ଣ୍ଣିମାର କୌଣସି ପାର୍ଥକ୍ୟ ଦେଖି ପାରୁ ନ ଥିଲି; କାରଣ ମୋର ଲକ୍ଷ୍ୟ ଥିଲା ସ୍ଥିର । ମୋର ମନ ଥିଲା ଅବିଚଳିତ ।···ଅଥଚ ମୋ ପାଇଁ ବାହାରେ ଅପେକ୍ଷା କରୁଥିଲେ ଦୁଇଜଣ ଭଦ୍ରଶ୍ରେଣୀର ଲୋକ—ମଦନବାବୁ ଆଉ ବଶୁ । ....ଆଉ ମୋ ସାଙ୍ଗରେ ଥିଲା, ସେଇ ସ୍ୱନାମ ଧନ୍ୟା—ସୁନାମା । ···ଏଠିକି ଆସିବାର ଦିନକ ପରେ ଖବର ପାଇଲି, ବାପା ଆଉ ନାହାଁନ୍ତି । ....ଆଖିରୁ ବହିଲା ଲୁହଧାର—ଛାତି ଭିତରେ ଦୁଃଖର ନଆଁ ଜଳି ଉଠିଲା— । କିନ୍ତୁ ଆସନ୍ତା କାଲିର ଜୀବନ—ଯାତ୍ରାପାଇଁ, ପାଦଟିକ୍ ଆଗେଇ ଚାଲିଲି । ମତେ ଏଠୁ ଉଦ୍ଧାର କରିବା ପାଇଁ, ଭାଇ ଆସିଲେ । ···ତାଙ୍କୁ ଦେଖାସୁଦ୍ଧା କଲି ନାହିଁ ! ଏଇ ହେଲା ମୋର ଏଠାକାର ପରିଚୟର ଗୋଟାଏ ଦିଗ । ମୋ ସମ୍ବନ୍ଧରେ ଆପଣ ଆଉ ଚିନ୍ତା କରିବେ କʼଣ ? ( ଏହିକ୍ଷଣି ବେଳେ ସୁନାମା

ଗୋଟାଏ ଟ୍ରେରେ ଟ୍ୱ' ସରଞ୍ଜାମ ନେଇ ଆସିଲ; କିନ୍ତୁ ମନୋଜକୁ ଦେଖି ସେ ଭୟରେ ଫେରି ଯାଉଥିଲ ) ଯେ୍ୱ' କିଣ ସୁନାମା ? ମନୋଜବାବୁ ତତେ ବାନ୍ଧି ନବାକୁ ଆସି ନାହାଁନ୍ତି ! ଡ଼ରୁଛୁ କାହିଁକି ? ଦେ—ବାବୁଙ୍କୁ ଟ୍ୱ' ଦେ—( ସୁନାମା ଟେବୁଲ ଉପରେ ଟ୍ୱ' ସରଞ୍ଜାମ ରଖିଲ )

ଗୀତା—ନଅନ୍ତୁ, ଟ୍ୱ' ନଅନ୍ତୁ ।

ସୁନାମା—ବାବୁ ଏକା ଆଇଚନ୍ତି ?

ଗୀତା—ଆଉ କିଏ ଆସିଥା'ନ୍ତା— ?

ସୁନାମା—ନାଇଁ, ମୁଁ କହୁଥିଲ ରାଜୁବାବୁ ଅବା ଆଇଥେବେ ?

ଗୀତା—ରାଜୁବାବୁ ଆଉ ଏଠିକି ଆସିବେ—ଏ ଆଶା ଏବେବି ତୋ'ର ଅଛି ?

ସୁନାମା—ଯାହା କହୁଚ ଦେଈ ! ମୁହଁ ଅଛି ଯେ ? ଆଉ ମୁହଁ ଦେଖେଇବାକୁ ଆସିବେ !....(ମନୋଜକୁ) ତମେ କହୁଲ ବାବୁ— ନିଆଶ୍ରୀ ବୋଲି ଘରେ ନେଇ ଆଶ୍ରା ଦେଇଥିଲେ, କ'ଣ ଏଇଥି ପାଇଁ ? ଦି' ମାସ କାଳ ଯା' ମୁହଁ ଏଣିକି—ତା' ମୁହଁ ତେଣିକି ।........ସେ ଦିନ ପୁଣି ବାହାଘର ନାଆଁରେ ଯୋଉ ଚାଲି ନାଗିଲ—ଛି, ଛି, ଛି—ତମେତ ନିଜେ ସବୁ ଦେଖିଚ ବାବୁ—ମୁଁ ଆଉ ଅଧିକା କ'ଣ କହିବ ?

ଗୀତା—ତତେ କେହି କିଛି କହିବାକୁ କହୁନ ସୁନାମା—ତୁ ଯା—

ସୁନାମା—ଯାଉଚ ଦେଈ—ଯାଉଚ ! ( ଚାଲିଗଲ ଭିତରକୁ )

ମନୁ—ଏମାନଙ୍କର ଏଇସବୁ ଅଭିଯୋଗକୁ ତମେ ସ୍ୱୀକାର କରୁଚ ?

ଗୀତା—କଥାଟା ସୁନାମା ମୁହଁରୁ ଶୁଣିଲେ ବୋଲି ଆପଣ ଏକଥା କହୁଚନ୍ତି ଯଦି ମୋ' ମୁହଁରୁ ଶୁଣିଥା'ନ୍ତେ—

ମନୁ—କ୍ଷମାକର ଗୀତା ! ମୁଁ ବୁଝିଚି ତମ ମନର ବ୍ୟଥା । ମୁଁ ଜାଣେ ଟମ ବିରୁଦ୍ଧ ଅଭିଯୋଗର କାହାଣୀ··· । ତଥାପି—

ଗୀତା—ଏଥିରେ ଆଉ କାହାର କିଛି କହିବାର ନାହିଁ ମନୋଜ ବାବୁ। ମୁଁ ସୁନାମାକୁ ଘୃଣାକରେ—ଅବିଶ୍ୱାସ କରେ। ମଦନ ବାବୁ ଆଉ ବିଶୁକୁ ମୋ ପାଦ ତଳର କୁକୁର କରି ମୁଁ ରଖିଛି। କିନ୍ତୁ···ସେଇ ସାଙ୍ଗେ ସାଙ୍ଗେ ମୋର ଅତି ଆପଣାର ଶାନ୍ତି ନୂଆବୌ; ଆଉ ରଜୁଭାଇଙ୍କୁ ମୁଁ··· (କ୍ରୋଧରେ ଯେମିତି ବାକ୍‌ରୁଦ୍ଧ ହୋଇଗଲା) ହଁ ମନୋଜବାବୁ, ମୋ ଆଖିରେ ଏମାନେ ସମସ୍ତେ ସମାନ।

ମନୁ—ଗୀତା!

ଗୀତା—ଆଚ୍ଛା। ଏ ଆଲୋଚନା ମୁଁ ଆଉ କରୁନି! କରି କିଛି ଲାଭ ନାହିଁ। ବର୍ତ୍ତମାନ ଆପଣଙ୍କ କଥା କୁହନ୍ତୁ।

ମନୁ—ମୋ' କଥା?

ଗୀତା—କଟକ କେବେ ଆସିଲେ?

ମନୁ—ଆଜି।

ଗୀତା—ଭାଇଙ୍କ ଘରକୁ ଯାଇଥିଲେ?

ମନୁ—ନା—ସିଧା ଏଇଠିକି ଆସିଛି।

ଗୀତା—କାହିଁକି? ଆପଣଙ୍କର ଅତି ପ୍ରିୟ ବନ୍ଧୁଙ୍କ ଘରକୁ ନଯାଇ ସିଧା ଏଠିକି କାହିଁକି ଆସିଲେ?

ମନୁ—ତମେ ଯଦି ଭାବୁଥାଅ ଗୀତା ଯେ, ମୋ ସହିତ ତମର ଏ ରୁକ୍ଷ ବ୍ୟବହାରରେ ତମେ ମନେ ଅପମାନିତ କରି ଫେରାଇ ଦେବ···ତା' ହେଲେ ତମର ଧାରଣା ଭୁଲ ବୋଲି ମୁଁ କହିବି? ମୁଁ ଆଜି ଆସିଛି···ତମକୁ ଏଠୁ ଫେରାଇ ନେବି।

ଗୀତା—କ'ଣ କହିଲେ? ମତେ ଏଠୁ ଫେରାଇ ନେବେ? କାହିଁକି? କୋଉଠିକି ଫେରାଇ ନେବେ?

ମନୁ—ଯୁଆଡ଼େ ତମ ଇଚ୍ଛା। କିନ୍ତୁ ଏଠି ତମେ ଆଉ ରହି ପାରିବ ନାହିଁ। ଏଠୁ ତମକୁ ମୁଁ ନେଇ ଯିବାକୁ ଆସିଛି।

ଗୀତା—ଆପଣଙ୍କର ଉଦ୍ଦେଶ୍ୟ?

ମନୁ—ସବୁ ସମୟରେ ସବୁ କଥା ମୁହଁ ଖୋଲି କୁହା ଯାଇ ପାରେନା ଗୀତା ।

ଗୀତା—ମତେ ବିବାହ କରିବେ—ଏଇ କଥାଟା ମୁହଁ ଖୋଲି କହି ପାରୁ ନାହାନ୍ତି ତ ?

ମନୁ—ବେଶ୍-ଯଦି ତାହାହିଁ ମୋ ମନର କଥା ହୋଇଥାଏ ?

ଗୀତା—ତା' ହେଲେ ମୁଁ କହିବି-ଅନ୍ୟମାନଙ୍କ ପରି ଆପଣ ମଧ୍ୟ ମିଥ୍ୟା ଆଉ ଛଳନାର ଏକ ଅବତାର ।

ମନୁ—ଗୀତା !

ଗୀତା—ମୋର ବିବାହ-ପ୍ରସ୍ତାବ ଉପରେ ଯୋଉ ଦିନ ଏତେ ବଡ଼ ଗୋଟାଏ ପ୍ରହସନ ହୋଇଗଲା—ସେ ଦିନ ଆପଣ ତ ସେଠି ଥିଲେ ? ଗୋଟାଏ ଅମଣିଷ-ଅପଦାର୍ଥ ସହିତ ମୋର ବିବାହ ହୋଇ ପାରିବ ନାହିଁ ବୋଲି, ଭାଇ ଯେତେବେଳେ ଜିଦ୍ ଧରି ବସିଲେ—ସେତେବେଳେ ଆପଣତ ନିଜେ ଆଗେଇ ଆସି ପାରିଥାନ୍ତେ ?

ମନୁ—ସେ ଦିନ···ଗୀତା···ସେ ଦିନ ମୁଁ···

ଗୀତା—ଜାଣେ ସେ ଦିନ ଆପଣ ଆଶଙ୍କା କରୁଥିଲେ ଯେ, ମୋ ପାଇଁ ଆପଣଙ୍କ ପ୍ରତିଦ୍ୱନ୍ଦୀ ରୂପରେ ସେଠି ରହିଥିଲେ, ସ୍ୱୟଂ ଆପଣଙ୍କର ପୂଜନୀୟ ଭାଇ ରାଜୁବାବୁ ।

ମନୁ—ତମର କ'ଣ ହିତାହିତ ଜ୍ଞାନ ଲୋପ ପାଇଲାଣି ଗୀତା ? କାହାକୁ ତମେ କ'ଣ କହୁଚ ?

ଗୀତା—ଆପଣ ସେଇ ମନୋଜ ବାବୁ ତ ?....ନୂଆବୋଉଙ୍କ ମୁହଁରୁ ମୋର ପ୍ରଥମ ପରିଚୟ ଶୁଣି ବିଦ୍ରୂପ କରି କହିଥିଲେ—"ମୁଁ ହଉଚି ଖବର କାଗଜର ସେଇ ଗୀତା" । ମୋର ପରିଚୟ ପାଇ ସାରିବା ପରେ ଆପଣଙ୍କ ହାତର ଫୁଲ ତୋଡ଼ାଟା କଣ୍ଟକିତ ହୋଇ ଉଠିଥିଲା ।···

ମନୁ—ଗୀତା !

ଗୀତା—ମୁଁ ସବୁ ଜାଣୁଥିଲି—ସବୁ ବୁଝୁଥିଲି—କିନ୍ତୁ ପଥରେ ପଡ଼ି ସବୁ ଭୁଲି ଯାଉଥିଲି ଗୋଟିଏ ଆଶାରେ ଯେ, ମୋର ପରି ହୁଏତ ଦୁନିଆଁ, ମୋର ସବୁ ପଛ କଥାକୁ ଭୁଲିଯିବ । କିନ୍ତୁ ତା' ହେଲା ନାହିଁ । ଆପଣ ବଦ୍ରୂପ କଲେ—ନୂଆବୌ ହିଂସା କଲେ—ଅବିଶ୍ୱାସ କଲେ—ଆଉ ଯାହାଙ୍କ ପାଦତଳେ ମୁଁ ସ୍ୱର୍ଗପୁରୀର ସ୍ୱପ୍ନ ଦେଖୁଥିଲି— ( କାନ୍ଦି କାନ୍ଦି ) ସେ ମତେ ନର୍କପୁରୀକୁ ଠେଲି ଦେବାକୁ ଗୁହିଁଲେ । ( ଦୁଇହାତ ମୁହଁରେ ରଖି କାନ୍ଦୁଥାଏ, ଏତିକିବେଳେ ମନୋଜ ଯିବାକୁ ବାହାରିଲେ, ଗୀତା ହାତଖୋଲି ଗୁହିଁଲା ) ଆପଣ ଯାଉଚନ୍ତି ?

ମନୁ—ହଁ, ମୁଁ ଯାଉଚି, ଅତି ନିଷ୍ଠୁର ଆଘାତ ଦେଇ ତମେ ମତେ ଫେରାଇ ଦଉଚ, କିନ୍ତୁ ।

ଗୀତା—କିନ୍ତୁ ?

ମନୁ—ମୁଁ ଯାଉଚି କେବଳ ଏଇ ଗୋଟାଏ ନିଷ୍ପତ୍ତି ନେଇ ଯେ ··ମୁଁ ···ପୁଣି ଆସିବି ।

ଗୀତା—ଆପଣ ପୁଣି ଆସିଲେ ମୁଁ ନିଶ୍ଚୟ ଖୁସି ହେବି । କିନ୍ତୁ ନ ଆସିଲେ······ମୋର ଦୁଃଖ କରିବାର କାରଣ ଯେମିତି କିଛି ନ ରହୁ ! ( ଗୀତାର କଥା ଶେଷ ବେଳକୁ ମନୋଜ ଗୁଲି ଯାଇଥାଏ ଆଉ ଗୀତା···ନିଜକୁ ଦୃଢ଼ ରଖିବାର ପ୍ରବଳ ଚେଷ୍ଟା ସତ୍ତ୍ୱେ, ଯେମିତି ଭାଙ୍ଗି ପଡ଼ୁଥାଏ । ଟିକିଏ ପରେ ଆସିଲା ବଶୁ )

ବଶୁ—ଦେଈ ?

ଗୀତା—ଉଁ

ବଶୁ—ସେ ବାବୁ ଗଲେଣି ?

ଗୀତା—ଦେଖୁଚତ ଗଲେଣି—ଆଉ କହୁଚ କ'ଣ ?

ବଶୁ—ନାଇଁ ମୁଁ ପଚାରୁଥିଲି·····କ'ଣ ହେଲା ?

ଗୀତା—କୋଉ କଥା ?

ବଣ୍ଟୁ—ଫିଲମ୍ !

ଗୀତା—ଫିଲ୍ମ ,??

ବଣ୍ଟୁ—ସେ ବାବୁ ଫିଲମ୍ କଂପାନୀର ଲୋକ, ନା ? ଫିଲମ୍ ତିଆରି କରୁଚନ୍ତି—ସେଇଥି ପାଇଁ ତମ ପାଖକୁ ଆସିଥିଲେ ।

ଗୀତା—ହଁ ! ପାଗଳ ହବାକୁ ତମର ଆଉ କେତେ ସମୟ ବାକୀ ଅଛି.......ମୁଁ କେବଳ ସେତିକ ଦେଖିବି ।...ମଦନବାବୁ କାହାନ୍ତି ?

ବଣ୍ଟୁ—ମଦନବାବୁ ? ହେଇଟିପରି ବାବୁ ଆସିଲେଣି ( ମଦନ ଆସିଲେ ମୁହଁରେ ହସ ହସ ଭାବ )

ଗୀତା—ଆସନ୍ତୁ, ମୁଁ ଆପଣଙ୍କୁ ଅପେକ୍ଷା କରି ବସିଚି...

ମଦନ—ମତେ ଅପେକ୍ଷା କରି ବସି ରହିଥିଲ ? କାହିଁକି—ମୋ ପାଇଁ କଷ୍ଟକରି ବସି ରହିବାର ଦରକାର କ'ଣ ଥିଲା ? ତମ କାମପାଇ କ'ଣ ମୋର ସମୟର ଅଭାବ ଅଛି ଯେ....

ଗୀତା—ମୋର ସ୍ତୁତିଗାନ ଶୁଣିବା ପାଇଁ ମୁଁ ଆପଣଙ୍କୁ ଅପେକ୍ଷା କରିନ ? ସେ ଭଦ୍ରଲୋକ ଗଲେଣି ?

ମଦନ—କିଏ, ସୁଜନ ବାବୁ ?

ଗୀତା—ହଁ ।

ମଦନ—ଗଲେଣି ।

ଗୀତା—କ'ଣ କହୁଥିଲେ ସେ ?

ମଦନ—ତମେ ବିଶ୍ୱାସ କରିବ ନାଇଁ ଗୀତା........

ଗୀତା—ଆପଣଙ୍କୁ ସବୁବେଳେ ଅବିଶ୍ୱାସ କରି ସୁଦ୍ଧା ଏଠି ମୋର ଛ'ଟି ମାସ କଟିଗଲାଣି, ବିଶ୍ୱାସ କରି ଅଧିକ କିଛି ଲାଭ ନାହିଁ । କହନ୍ତୁ—ସେ କ'ଣ କହୁଥିଲେ ?

ମଦନ—ତାଙ୍କ ପରି ଗୁଣୀ ଲୋକ ଯେ ତମକୁ ପ୍ରଥମ ଥର ପାଇଁ ଦେଖି ତମର ଏମିତି ପ୍ରଶଂସା କରି ପାରନ୍ତି—ଏ କଥା ମୋର କଳ୍ପନାର ବାହାରେ ଥିଲା !

ଗୀତା—ମୋର କି ପ୍ରଶଂସା ସେ କରୁଥିଲେ ? ମୋ ରୂପର—ନା ଗୁଣର—ନା ମୋର ଅଜ୍ଞାତ ଇତିହାସର ?

ମଦନ—ତମେ ମତେ ପରୀକ୍ଷା କରିବାକୁ ଚାହଁ ଗୀତା ?

ଗୀତା—ଆପଣ କଣ କହିବାକୁ ଚାହାଁନ୍ତି । ସ୍ପଷ୍ଟ କହୁ ନାହାନ୍ତି କାହିଁକି ?

ମଦନ—ମୋ କଥା ମୁଁ କହୁ ନାହିଁ ଗୀତା—ତାଙ୍କର କଥାରେ ମୁଁ କହୁଚି···ତମ ଭବିଷ୍ୟତ ଅତି ଉଜ୍ଜ୍ୱଳ !

ଗୀତା-ଧନ୍ୟବାଦ ! ମୋ ତରଫରୁ ତାଙ୍କୁ ଧନ୍ୟବାଦ ଜଣାଇ ଦେବେ !

(ଚାଲିଯାଉଥିଲା)

ମଦନ—ତମେ ଚାଲି ଯାଉଚ ଯେ ?

ଗୀତା—ଆଉ ପୁଣି କ'ଣ କହୁଚନ୍ତି ? ଫିଲ୍ମ ?

ମଦନ—ଫିଲମ୍ ?

ଗୀତା—କେଜାଣି—ମୁଁ ଜାଣେ ?

ମଦନ—ହୁଁ । ବିଶୁ—

ବିଶୁ—ସାର୍ ?

ମଦନ—ତମେ ଏଠି କ'ଣ କରୁଚ ?

ବିଶୁ—କୁହନ୍ତୁ ସାର୍, ଆଉ କ'ଣ କରିବି ?

ମଦନ—ମୋଠୁଁ କାମର ତାଲିକା ନ ପାଇଲେ, ତମେ କ'ଣ କରିବ ଜାଣିନା ବୋଲି କହିବାକୁ ଚାହଁ ?···ଯାଅ ଏଠୁ । (ବିଶୁ ଚାଲିଗଲା)

ଗୀତା—ତା' ହେଲେ କିଛି ଗୋଟାଏ ଘଟିଚି ।

ମଦନ—କିଛି ଘଟିନି ଗୀତା ! ମୁଁ ଯାହା କିଛି କରୁଚି ତମର ମଙ୍ଗଳ ପାଇଁ—ତମ ଭବିଷ୍ୟତ ଜୀବନର ସୁରକ୍ଷା ପାଇଁ···

ଗୀତା—କ'ଣ ଆପଣ କହିବାକୁ ଚାହାନ୍ତି ?

ମଦନ—ଏ କଥା ତମେ ନିଶ୍ଚୟ ସ୍ୱୀକାର କରିବ ଗୀତା ଯେ ତମର ଅତି ଦୁର୍ଦ୍ଦିନ ବେଳେ ଯେତେବେଳେ ତମେ ଅମୃତ ଭିତରେ ବିଷର ସନ୍ଧାନ ପାଇଥିଲ—ଯେତେବେଳେ ତମର ପରମ ପୂଜ୍ୟ ଦେବତା ଭିତରେ ସୈତାନର ସ୍ୱରୂପ ତୁମେ ଦେଖିଥିଲ....

ଗୀତା—ମାନୁଚି, ସେତେବେଳେ ଆପଣଙ୍କ ପରି ଲୋକ ଉପରେ ମୁଁ ଭରସା ରଖି ପାରିଥିଲି ?

ମଦନ—ମତେ ତୁମେ ଯାହା କୁହ—ଯାହା ଭାବନା କାହିଁକି—ସେ ଦିନର ଅନାଥିନୀ—ନିରାଶ୍ରୟା ବାଳିକା ତୁମେ···କେବଳ ମୋରି ପାଇଁ ତମର ସାମାନ୍ୟ ଅସମ୍ମାନ କେହି କରିବାକୁ ସାହସ କରିନି । ଆଉ ଆଜି ତୁମେ ଯୋଉ ଅବସ୍ଥାରେ ଆସି ଠିଆ ହୋଇଚ··· ସେଥିପାଇଁ ମୋର କର୍ତ୍ତବ୍ୟ ମଧ୍ୟ ମୁଁ କରି ଆସିଚି ।

ଗୀତା—ତା' ମଧ୍ୟ ମୁଁ ଅସ୍ୱୀକାର କରୁନି !

ମଦନ—ଫିଲମ୍ କଥା ତୁମେ କହୁଥିଲ ନା ? ତୁମେ ଫିଲମ୍‌ରେ ଅଭିନୟ କରିବ ?

ଗୀତା—ମୋ କଥା ଥାଉ ! ଆପଣ କ'ଣ କହୁଚନ୍ତି ?

ମଦନ—କଂପାନୀ ତରଫରୁ ମୋ' ସହିତ ଏଥି ପାଇଁ ତମେ ଗୋଟାଏ ଚୁକ୍ତି ପତ୍ର କରିଦେବ !

ଗୀତା—କାହିଁକି ? ଆପଣଙ୍କର କଂପାନୀ—ମୁଁ ଅଭିନୟ କରିବି—ଏଥି ପାଇଁ ଚୁକ୍ତିପତ୍ରର ଦରକାର କ'ଣ ?

ମଦନ—ଦରକାର ଅଛି ! ସବୁ ଦିନ ତ ସମାନ ଯାଏନା....ଏଇ ଦେଖ ସେ ଦଲାଲ....(ଦଲାଲ ବାହାର କଲା ବେଳେ ଆସିଲା ବିଶୁ)

ବଶୁ—ହୁସିଆର ଗୀତା ଦେଈ—ତମ ପାଇଁ ଇଏ ବୁଢ଼ି ଆଣି ଜାଲ ବିଛା ହଉଚ।....ତମେ ଏଥିରେ ମୋଟେ ପାଦ ଦିଅନା—

ମଦନ—ବଶୁ !

ବଶୁ—ଏଥିରେ ତମେ ଦସ୍ତଖତ କଲ ସାଙ୍ଗେ ସାଙ୍ଗେ ମଦନବାବୁ ପାଞ୍ଚ-ସାତ ହଜାର ଟଙ୍କା ମାରି ନେବେ—

ମଦନ—ତମର କ'ଣ ମୁଣ୍ଡ ଖରାପ ହେଇ ଗଲାଣି ବଶୁ ?

ବଶୁ—ଆଉ ତା' ପର ଦିନ ତମେ ଗୀତା ଦେଈ—ଏଠି ନଥିବ—ଥିବ କଲକତା କ ବମ୍ବେରେ। ସେଠି ତମେ ହାତ ଗୋଡ଼ ବନ୍ଧା ହେଇ ପଡ଼ିଲା ପରି ପଡ଼ିଥିବ ?

ମଦନ—ପାଗଳଙ୍କ ପରି କ'ଣ କହୁଚ ବଶୁ ?

ବଶୁ—ସର୍କାରଙ୍କଠୁଁ ଟଙ୍କା ଆସିବ—ବାହାରୁ ଟଙ୍କା ଆସିବ—ସେ ସବୁର ମାଲିକ ତମେ !! ଆମେ ଖାଲି ଦରମା ଖିଆ ଗୁଣ୍ଡରା ହେଇ ପଡ଼ି ରହିବୁ ?

ମଦନ—ବଶୁ—

ବଶୁ—କାଇଁକି ? ଗୀତା ଦେଈଙ୍କ ପାଇଁ ମୁଁ କ'ଣ ଖଟି ନାହିଁ ? ତାଙ୍କ ଉପରେ ତମର ଯେମିତି ଅଧିକାର—ମୋର ସେମିତି ଅଧିକାର।

ଗୀତା—ମୋ ଉପରେ ଦୁହିଁଙ୍କର ଅଧିକାର ? ?

ମଦନ—ଶୁଣୁଚ ଗୀତା, କ'ଣ ସେ କହୁଚ ?

ବଶୁ—ତମେ କହୁଚ ଏ ଦଲିଲରେ ସେ ଦସ୍ତଖତ କରିବେ—ମୁଁ କହୁଚି—ନା, ସେ ଏଥିରେ ଦସ୍ତଖତ କରିବେ ନାଇଁ !

ମଦନ—ଶୁଣୁଚ ଗୀତା, ଯା କଥାକୁ !

ବଶୁ—ସେ କ'ଣ ଶୁଣିବେ ! ଏଥିରେ ସେ ଦସ୍ତଖତ କରିବେ ନାହିଁ ।

(ଦଲିଲଟା ମଦନ ହାତରୁ ଛଡ଼େଇ ନେଲା)

ମଦନ—ବଶୁ- ଦଲିଲଟା ଫେରାଇ ଦେ—

ବଶୁ—ନା—ମୁଁ ଦେବ ନାହିଁ । ଏଇଟା ନେଇ ମୁଁ ବ ଯାଉଚି ଓକିଲ ପାଖକୁ !

ମଦନ—ତୋର ଏତେ ସାହାସ-ମୋ ହାତରୁ ତୁ ଦଲିଲଟା ଛଡ଼େଇ ନଉଚୁ ।

ବଶୁ—ଅଲବତ୍ ନେବ ।

ମଦନ—ବଶୁ !

ବଶୁ—ନା—ମୁଁ ଦେବ ନାହିଁ—ଦେବ ନାହିଁ ।

(ଦୁହେଁ ଟଣା ଓଟରା ହେଉଥିଲେ । ଗୀତା ଏମାନଙ୍କର ଏ ଅବସ୍ଥା ଦେଖି ପ୍ରାଣ ଖୋଲି ହସ ହସୁଥାଏ)



## ଦ୍ୱିତୀୟ ଦୃଶ୍ୟ

(ରାଜୁ ଘରର ଅଳନ୍ଦ ! ସମୟ ପୂର୍ବାହ୍ନ । ହାତରେ ଖଣ୍ଡେ ଚିଠି ଧରି ରାଜୁ ପଢି ପଢି ଆସିଲା ବିପରୀତ ଦିଗରୁ ଆସିଲା ଶାନ୍ତ)

ଶାନ୍ତ—କିଏ ଚିଠି ଦେଇଛି ? (ରାଜୁ କେବଳ ପଢୁଥାଏ) କାହା ଚିଠି....?

ରାଜୁ—(ଚିଠିଟି ବଢେଇ ଦେଇ) ପୁରୀରୁ ଆସିଛି....ଅପା ପାଖରୁ । (ଚିଠିଟି ଶାନ୍ତ ପଢ଼ିଲା) ଅପା ପାଖକୁ ତମେ ଚିଠି ଲେଖିଥିଲ ?

ଶାନ୍ତ—ହଁ .!

ରାଜୁ—କାହିଁକି ?

ଶାନ୍ତ—ମୁଁ ତ ଆଉ ଜାଣି ନ ଥିଲି ଯେ, ଏତେ କରି ଲେଖିବା ସତ୍ତ୍ୱେ । ସେ ଏଠିକି ଆସିବାକୁ ମନା କରି ଦେବେ ?

ରାଜୁ—କିନ୍ତୁ ଏଠିକି ଆସିବା ପାଇଁ ତମେ ତାକୁ ଚିଠି ଲେଖିଥିଲ କାହିଁକି ?

ଶାନ୍ତ—ଚିଠି ଲେଖିବାଟା ମୋର ଭୁଲ ହୋଇଛି ବୋଲି ତମେ କହୁଚ ?

ରାଜୁ—ମୁଁ କହୁଚି ??? ଏଥିରେ ତମର କିଛି କହିବାର ନାହିଁ ?

ଶାନ୍ତ—ଯେମିତି ଭାବରେ ଅପା ଘର ଛାଡ଼ି ଯାଇଚନ୍ତି ।

ରାଜୁ—ମୁଁ ତ ଠିକ୍ ସେଇ କଥା କହୁଚି । ଯେମିତି ଭାବରେ ସେ ମତେ ଗୋଟାଏ କୁକୁରଠୁ ବଳି, ହୀନ ମନେ କରି ମୋ ପାଖରୁ ଯାଇ ଦୂରରେ ରହିଲା—ତାଠୁ ତମେ ଆଉ କ'ଣ ଆଶା କରି ପାରେ ?

ଶାନ୍ତ—ସବୁ କଥାର ଗୋଟାଏ ସୀମା ଥାଏ । ଏବେ ଅଧେ ନୁହେଁ, ···ପାଞ୍ଚ ଛ' ମାସ ହେଇଗଲା ସେ ଅଭିମାନ କରି ଯାଇ ପୁରୀରେ ଘର ଭଡ଼ା ନେଇ ରହୁଚନ୍ତି···

ରାଜୁ—ଅଭିମାନ ନୁହେଁ ଶାନ୍ତ ଘୃଣା ! ଘୃଣାରେ ସେ ଆମକୁ ଛାଡ଼ି ଚାଲିଯାଇଚି ତଥାପି ତା' ପାଦ ଧରି କ୍ଷମା ଭିକ୍ଷା ମୁଁ କରିଥିଲି.... କିନ୍ତୁ ସେ ମୋ ମୁହଁକୁ ଚାହିଁନି, ଅଥଚ ତମେ ଲୁଚେଇ ତା ପାଖକୁ ଚିଠି ଲେଖୁଚ, କାହିଁକି ? ପଢ଼ିଲିତ ଉତ୍ତରରେ କଣ ସେ ତମକୁ ଲେଖିଚି ?

ଶାନ୍ତ—ସେତ କିଚ୍ଛୁ ଭୁଲ ଲେଖି ନାହାନ୍ତି ? ତମରି ଘରେ, ତମରି ଆଖିଆଗରେ ଯାହା ଘଟିଗଲା—ଯାହାପାଇଁ ତମେ ଘର ସଂସାର ସବୁ ତୁଚ୍ଛ କରିଦେବାକୁ ବାହାରିଥିଲ, ସିଏ ତମ ମୁହଁରେ ଯେମିତି କାଳିବୋଳି ଦେଇ ଚାଲିଗଲା—ସେଥିଲାଗି ତ ଚିରଦିନ ସମସ୍ତଙ୍କ ପାଖରେ ତମେ ଉପହାସର ପାତ୍ର ହେଇ ରହିବ ।

ରାଜୁ—ଏ ଆଲୋଚନା କଣ କେବେ ଶେଷ ହବନାଇ ଶାନ୍ତ ?

ଶାନ୍ତ—ଆଲୋଚନା କରୁଚି କିଏ ? କାହିଁକି ତମେ ମାସ ମାସ ହେଲା ଛୁଟିନେଇ ଘରେ ବସିଚ । ବାହାର ଦୁନିଆଁ ସହିତ ତମେ ତମର ସବୁ ସଂପର୍କ ତୁଟେଇ ଦେଇଚ କାହିଁକି ? ଏଇ ଗୋଟାଏ ଘରେ—ତମେ ଅଛ, ମୁଁ ଅଛି । କିନ୍ତୁ ଆମ ଭିତରେ ଠିଆ ହେଇଚି ଗୋଟାଏ ଅଦେଖା ପାଚେରୀ କାହାପାଇଁ ଏ ସବୁ ଘଟୁଚି ? ସେଦିନ ତମେ କହିଥିଲ ଗୀତା ପାଇଁ ତମେ ଶେଷ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପ୍ରସ୍ତୁତ । ....ଆଜି ସେଇକଥା ଯେମିତି ଘଟିବାକୁ ଯାଉଚି ଗୀତା ତାର ନିଜର ରାସ୍ତା ବାଛିନେଲା ପରେ ବି ତମେ

ଅପମାନ ଅନୁଶୋଚନାର ଶେଷ ପାହାଚରେ ଆସି ଠିଆ
ହେଲଣି । ··· ଦୋଷ ତମେ ଆଉ ଦଉଚ କାହାକୁ ?
(ଭିତରକୁ ଗ୍ଭଲଗଲା)

ବଶୁ—(ବାହାରୁ) ବାବୁ ଘରେ ଅଛନ୍ତି ?···ବାବୁ ?

ରାଜୁ—କଏ ?

ବଶୁ—(କହୁ କହୁ ଆସିଲା) ଟିକଏ ଆଜ୍ଞା କାମଥିଲା ।

ରାଜୁ—ତମେ, ତମେ ଏଠି କାହିଁକି ଆସିଚ ?

ବଶୁ—ଆଜ୍ଞା, ସେଇ ଯୋଉ ବାବୁ—

ରାଜୁ—ତମେ ଏଠିକି ଆସିଲ କାହିଁକି ? ଗ୍ଭଲଯାଅ ଏଠୁ—

ବଶୁ—ମୋର ପଦେ କଥା ଆଜ୍ଞା—ସେଇ ଯୋଉ ବାବୁ....
ଆପଣଙ୍କର ଭାଇ....ମନୁ ବାବୁ—

ରାଜୁ—ମନୁ ?

ବଶୁ—ସେ ଅଛନ୍ତି ଏଠି ?

ରାଜୁ—ତା'ପାଖରେ ତମର କି କାମ ?

ବଶୁ—ମୋର ସେମିତି କିଛି କାମନାହିଁ ଯେ....ସେ ଅଛନ୍ତି ଏଠି ?

ରାଜୁ—ମନୁ କଟକରେ ନାହିଁ ! ତମେ ଯାଅ !

ବଶୁ—ସେ କଟକରେ ନଥିଲେ କ'ଣ ମୁଁ ଆଉ ଏଠିକି ଆସିଥାନ୍ତି ?

ରାଜୁ—ମୁଁ କହୁଚି ସେ କଟକରେ ନାହିଁ । ତମେ ଯାଅ ।

ବଶୁ—ଯାଉଚି ଆଜ୍ଞା ! ମୁଁ ତ ମୋ କାମରେ ଆସି ନଥିଲି—ଆସିଥିଲି
ଗୀତା ଦେଈଙ୍କ କାମରେ ।

ରାଜୁ—ଗୀତା ଦେଈ !

ବଶୁ—ହଁ ଆଜ୍ଞା । ଗୀତା ଦେଈଙ୍କ କାମରେ ମୁଁ ମନୁ ବାବୁଙ୍କୁ
ଖୋଜିବାକୁ ଆସିଥିଲି ।

ରାଜୁ—କଣ କହୁଚ ତମେ ?

ବଶୁ—ଆପଣ କହୁଥିଲେ ନା ମନୁ ବାବୁ କଟକରେ ନାହାନ୍ତି ବୋଲି ? ···ମନୁ ବାବୁ ଆଜ୍ଞା କଟକ ଆସିଚନ୍ତି । ସେ ଗୀତା (ଦେଈଙ୍କ ପାଖକୁ ଯାଇଥିଲେ ।

ରାଜୁ—ମନୁ ଯାଇଥିଲା ଗୀତା ପାଖକୁ ? କାହିଁକି ?

ବଶୁ—ସେକଥା ମୁଁ ଏବେ କେମିତି କହିବି ?

ରାଜୁ—ତମେ ଠିକ୍ ଜାଣ ମନୁ ଗୀତା ପାଖକୁ ଯାଇଥିଲା ?

ବଶୁ—ଆଜ୍ଞା, ଆମ୍ଭେ ଯେତେ ଖରାପ ଲୋକ ହେଲେବି, ଭୁଲ କଥାଟାଏ କହିବାକୁ ମୁଁ ଆପଣଙ୍କ ପାଖକୁ କାହିଁକି ଆସିଥାନ୍ତି ।

ରାଜୁ—କାହିଁକି ? ଗୀତା ପାଖକୁ କାହିଁକି ସେ ଯାଇଥିଲା ?

ବଶୁ—ମତେତ ଗୋଟାଏ ସୁଦ୍ ମିଛକଥା କହିଲେ । ତା'ପରେ କଣ ତାଙ୍କର କଥାବାର୍ତ୍ତା ହେଲା ଗୀତା ଦେଈ କାହିଁକି କାନ୍ଦିଲେ—ସେ କଥା ମୁଁ କିଛୁ ଜାଣେନି ।

ରାଜୁ—ହୁଁ—ଗୀତା ତମକୁ ପଠେଇଚି ତାକୁ ଖୋଜିବାକୁ ।

ବଶୁ—ମିଛ କହିବି ନାହିଁ ଆଜ୍ଞା—ଗୀତା ଦେଈ ମତେ ପଠେଇ ନାହାନ୍ତି—ହେଲେ ମୁଁ ତାଙ୍କର କାମରେ ଆସିଚି ।

ରାଜୁ—କଣ ତମେ କହୁଚ ?

ବଶୁ—ଆମ ମଦନ ବାବୁ....ପାଞ୍ଚ ସାତ ହଜାର ଟଙ୍କା ଚକେଇ ଦେଇ, ଗୀତା ଦେଈଙ୍କୁ ଏକଦମ ଏଠୁ ବମ୍ବେ କି କଲିକତା ବିଦା କରିଦବା ମତଲବରେ ଅଛି ।

ରାଜୁ—ଗୀତା କଟକ ଛାଡ଼ି ଚାଲି ଯାଉଚି ?

ବଶୁ—ହଁ ବାବୁ, ବିଦା ଉପରେ । ମୁଁତ ଦେଖିଲି ବାବୁ ମୋର ଏଥିରେ ହାନି ନାହିଁ କି ଲାଭନାହିଁ । ଆପଣତ ଆଉ ଗୀତା ଦେଈଙ୍କ ପାଖ ମାଡ଼ୁ ନାହାନ୍ତି । ସେଇଥିପାଇଁ କହିଲି ଯାଏ ମନୁ ବାବୁଙ୍କୁ ହେଲେ କହିଦିଏ । ତାଙ୍କ ସାଙ୍ଗରେତ ନୂଆ ଭାବ ହେଇଚି···

ରାଜୁ—ବନ୍ଧୁ ! !

ବନ୍ଧୁ—ମୁଁ ଯାଉଚି ଆଜ୍ଞା—ନମସ୍କାର (ଚାଲିଗଲା ରାଜୁ ଯେମିତି ସ୍ତମ୍ଭୀଭୂତ ହୋଇ ଠିଆ ହୋଇଥାଏ, ଶାନ୍ତ ପୁଣି ଆସିଲା)

ଶାନ୍ତ—କଣ ହୋଇଚି ? ପୁଣି କି ବିପଦ ଆସିଲା ଶୁଣେ ?

ରାଜୁ—ବିପଦ ନୁହେଁ ଶାନ୍ତ । ତମପାଇଁ ବରଂ ଏକ ଶୁଭ ସମ୍ବାଦ ଆଜ ପୁଣି ତମେ ଅପା ପାଖକୁ ଚିଠି ଲେଖିଦେଇ ପାର ? ଏ କଥା ଶୁଣି ସେ ନିଶ୍ଚୟ ଖୁସିହୋଇ ସାଙ୍ଗେ ସାଙ୍ଗେ ଏଠିକି ଚାଲି ଆସିବ ।

ଶାନ୍ତ—ଗୀତା କଟକ ଛାଡ଼ି ଚାଲି ଯାଉଚି—ଏଇ କଥାତ ?

ରାଜୁ—ଶୁଣିଚ ତେବେ ?

ଶାନ୍ତ—ଶୁଣିଚି । କିନ୍ତୁ ତା' ସଙ୍ଗେ ସଙ୍ଗେ ତମେ କଟକ ଛାଡ଼ି ଯାଉନ ତ ?

ରାଜୁ—ଶାନ୍ତ ।

ଶାନ୍ତ—ଉଡ଼ା ଚଢ଼େଇ ପରି ଯିଏ ଖୋଲା ଆକାଶରେ ତା' ସ୍ଥାନ ବାଛି ନେଇଚି—ତାକୁ ତମେ ପିଞ୍ଜରାରେ ଆବଦ୍ଧ କରି ରଖିବାକୁ ଚାହିଁଥିଲ । ଆଉ ପାରିଲ ନାହିଁ ବୋଲି, ତମେ ସାରା ଜୀବନଟାକୁ ହା' ହୁତାଶରେ କଟେଇ ଦେବାକୁ ଯାଉଚ ।

ରାଜୁ—ଜଣେ ସାଧାରଣ ମଣିଷ ମନର ସମବେଦନା ଦେଇ କଥାଟାକୁ ତମେ ବିଚାର କର ଶାନ୍ତ ।

ଶାନ୍ତ—କିଛି ତ ଅଭାବ ନ ଥିଲା । କେବଳ ତମରି ମୁହଁକୁ ଚାହିଁ ମୋର ସ୍ନେହ—ମମତା, ମୁଁ ତା' ପାଇଁ ଢାଳି ଦେଇଥିଲି । କିନ୍ତୁ ହେଲା କ'ଣ ? ସେଇ ମଣିଷ ମନର ଦୁର୍ବୁଦ୍ଧି ନିକଟରେ ସବୁ କିଛି ହାର ମାନିଲା ।

ରାଜୁ—ଶ୍ୟାମ ମଉସାଙ୍କର ମଲା ବେଳର ସେଇ ଦୃଶ୍ୟ ମୁଁ ଭୁଲି ପାରିବିନି ଶାନ୍ତି । ତାଙ୍କ ଜୀବନର ଶେଷ ମୁହୂର୍ତ୍ତରେ ମୋ ବିରୁଦ୍ଧରେ ତାଙ୍କର ସେ ଯୋଉ ଅଭିଯୋଗ···!! ମୁଁ ଜାଣେ ଦିନେ ନା ଦିନେ ଭଗବାନଙ୍କ ନିକଟରେ ମତେ ଏହାର କୈଫିୟତ ଦବାକୁ ପଡ଼ିବ !

ଶାନ୍ତି—କେବଳ ତୁମ ପାଇଁ ନୁହେଁ । ଶୁଣିଲ ତ ବର୍ତ୍ତମାନ ମନୋଜ କଥା—ତା' ପାଇଁ ମଧ୍ୟ ଏ କୈଫିୟତ ଦବାକୁ ପଡ଼ିବ ।

ରାଜୁ—ମନୋଜ ! ନା—ନା—ମୁଁ କିଛି ଭାବି ପାରୁ ନାହିଁ—କିଛି କଳ୍ପନା କରି ପାରୁନି ··

ଶାନ୍ତି—ମୁଁ କିନ୍ତୁ ସ୍ପଷ୍ଟ କଳ୍ପନା କରି ପାରୁଚି—ମନୋଜ ପାଇଁ ତମ ମନରେ ହିଂସାର ନିଆଁ ଜଳି ଉଠିଲାଣି ।

ରାଜୁ—ଶାନ୍ତି ।

ଶାନ୍ତି—ଖାଲି ସେତିକି ନୁହେଁ, ମୁଁ ଆହୁରି କଳ୍ପନା କରି ଦେଖି ପାରୁଚି ସେଇ ନିଆଁର ଜଳନ୍ତା ଶିଖା !! ସେଥିରୁ କାହାରି ମୁକ୍ତି ନାହିଁ—କାହାରି ମୁକ୍ତି ନାହିଁ । (କାନ୍ଦି କାନ୍ଦି ଚାଲିଗଲା)



# ତୃତୀୟ ଦୃଶ୍ୟ

[ ଏଇ ଅଙ୍କର ପ୍ରଥମ ଦୃଶ୍ୟର ସେଇ କକ୍ଷ । ସମସ୍ତ ରାତ୍ରୀର ପ୍ରଥମ ପ୍ରହର । ଦୃଶ୍ୟ ଆରମ୍ଭରେ ଦେଖାଗଲା ମନୋଜ ଏକାକୀ କକ୍ଷ ମଧ୍ୟରେ ଇତସ୍ତତ୍ ଅସ୍ଥିର ଭାବରେ କାହାକୁ ଯେମିତ ଅପେକ୍ଷା କରୁଛ ।···ଟିକଏ ପରେ ଆସିଲା ଗୀତା । ]

ଗୀତା—ଆପଣ ?···ଆପଣ ପୁଣି ଆସିଚନ୍ତି ?

ମନୁ—ହଁ ଗୀତା—ମୁଁ ପୁଣି ଆସିଚି । ଆଉ ମୁଁ ଜାଣେ ମୋର ଏଥର ଆସିବାଟା ବ୍ୟର୍ଥ ହବ ନାଇଁ ।

ଗୀତା—ସାର୍ଥକ-ଜୀବନ, ସାର୍ଥକ-ଜନମ, ଏ ସବୁର ସ୍ୱପ୍ନ ଯିଏ ଦେଖେ, ବ୍ୟର୍ଥ ହୋଇଯିବା କଥାଟା ସିଏ ଶୁଣିଲେ, ହୁଏତ ତା' ବୁକୁ ଭିତରଟା ଥରି ଉଠିବ ?···ମୋ ପାଖରେ ସ୍ୱାର ମୂଲ୍ୟ ବା କ'ଣ ?···ଇଏ କ'ଣ ? ଠିଆ ହୋଇ ରହିଲେ ଯେ ! ବସନ୍ତୁ !

ମନୁ—ନା—ଗୀତା ··ମୁଁ ବସିବାକୁ ଆସିନ !

ଗୀତା—(ହସି) ତା' ମାନେ ? ଇମିତି ଠିଆ ହୋଇ ଜୀବନ ସାର୍ଥକ କରିବେ ? ବସିଲେ ସବୁ ବ୍ୟର୍ଥ ହୋଇଯିବ ?

ମନୁ—ମୁଁ ଜାଣେ ଗୀତା ! ତମେ ତମ ଜୀବନଟାକୁ ମୁଠାଏ ଶୁଖିଲା ଫୁଲର ପାଖୁଡ଼ା ପରି, ଶୂନ୍ୟରେ ନିରର୍ଥକ ଉଡ଼େଇ ଦବାର ଛଳନା କରୁଚ—ଅଥଚ ମଧୁ—ଗନ୍ଧ ଭରା ତମ ଜୀବନର ଫୁଲ ଏତେ ଟିକେ ବି ମଉଳି ନାଇଁ !!

ଗୀତା—ମନୋଜ ବାବୁ !!

ମନୁ—ତମେ ଛଳନା କରୁଚ ଯେ ହାଲକା ପବନ ପରି ଜୀବନ ତମର ଉପରେ ଉପରେ ଭାସି ବୁଲୁଚି !—ପ୍ରକୃତରେ କିନ୍ତୁ ଦୁଃଖର ପଥର-ବୋଝ ତଳେ ତମର ଜୀବନୀ ଶକ୍ତି ନିଷ୍ପେଷିତ-ନିସ୍ତେଜ !

ଗୀତା—ଆଜ ଆପଣ ଆସିଚନ୍ତି ମୋ'ଛାତି ଉପରୁ ସେଇ ପଥର ବୋଝ ଘୁଞ୍ଚାଇ ଦେଇ ମୋର ସଜ-ସୁଗନ୍ଧ ଜୀବନ ଫୁଲକୁ ଆବିଷ୍କାର କରିବେ—

ମନୁ—ତମେ ଶୁଣ ଗୀତା, ମୋ କଥା—

ଗୀତା—ବେଶ୍ ! କୁହନ୍ତୁ, ଆଜ କ'ଣ କହିବେ ?

ମନୁ—ପ୍ରଥମେ ମୋ ନିଜ ସମ୍ବନ୍ଧରେ ତମର ଯାହା ଭ୍ରମ ଧାରଣା ଅଛି ତା' ମୁଁ ଦୂର କରିବାକୁ ଚାହେଁ !

ଗୀତା—ବୁଝି ପାରିଲି ନାହିଁ ଆପଣଙ୍କ କଥା ।

ମନୁ—ତମେ ଯଦି ଭାବୁ ଥାଅ ଯେ, ତମେ ଏକାନ୍ତ ନିରାଶ୍ରୟା—ଅନାଥିନୀ....ଆଜ ତମକୁ ଏ ଦୁରବସ୍ଥାରୁ ମୁଁ ଉଦ୍ଧାର କରିବାକୁ ଆସିଚି, ତା' ହେଲେ ମୁଁ କହିବି, ତୁମର ଧାରଣା ଭ୍ରମ ।

ଗୀତା—ମାନିଲି ଏ ଧାରଣା ମୋର ଭୁଲ । କିନ୍ତୁ ଆପଣ କ'ଣ କହିବାକୁ ଚାହାନ୍ତି ଯେ, ଜଣେ ନାରୀର ଯଥାବିଧି ସମ୍ମାନ ମତେ ଦେଇ, ମୋ' ଜୀବନ ସାର୍ଥକ କରିବାକୁ ଆପଣ ଏଠାକୁ ଆସିଚନ୍ତି ?

ମନୁ—ନା—ଜୀବନରେ କେବେ ହେଲେ ସେ ସମ୍ମାନ ମୁଁ ଦେଇନି—ସେ ଅଧିକାର ମୋର ନାହିଁ ମୁଁ ଜାଣେ । କିନ୍ତୁ, ସମ୍ମାନ, ଅସମ୍ମାନ ସବୁଥିରୁ ଦୂରରେ ରହି, ମୁଁ କେବଳ ତମକୁ ଏତିକି କହିବାକୁ ଆସିଚି ଯେ—ତମେ ଭୁଲ କରିଚ ! ସ୍ବଜୁ ଭାଇଙ୍କୁ ଅବିଶ୍ବାସ କରି ତମେ ଭୁଲ କରିଚ ।

ଗୀତା—ପୁଣି ସେଇ ପୁରୁଣା କଥା ଆରମ୍ଭ କଲେ ?

ମନୁ—ଯେ ପର୍ଯ୍ୟନ୍ତ ସତ କଥାଟାର ସ୍ୱରୂପ ବାହାରକୁ ପ୍ରକାଶ ପାଇନ, ସେ ପର୍ଯ୍ୟନ୍ତ କୌଣସି କଥା କେବେ ପୁରୁଣା ହୁଏନା—

ଗୀତା—ମନୋଜ ବାବୁ ! ଜୀବନରେ ଯିଏ କେବେ ନାଲରଙ୍ଗ ଦେଖିନ, ତାକୁ ଅସୁମାରି କଥାକହି—ଅସଂଖ୍ୟ ଉଦାହରଣ ଦେଇ-ତାମନରେ ଗୋଟିଏ ଭୁଲ ଧାରଣା ହୁଏତ ଆପଣ ଆଣି ପାରନ୍ତ, କିନ୍ତୁ ନିଜ ଦେହର ରକ୍ତ କାଟି ଯିଏ ଏ ରଙ୍ଗର ପରିଚୟ ପାଇଚ, ତାକୁ ଆପଣ ଭୁଲେଇବେ କେମିତ ?

ମନୁ—ଯୁକ୍ତିର ଆଶ୍ରୟ ନେଇ, ତମେ କେବଳ ଅବାଟରେହିଁ ଗ୍ଲୁଲୁଚ ଗୀତା ।

ଗୀତା—ଆପଣଙ୍କ କଥା ଯଦି ସତ ହେଇଥାଏ, ଜୀବନରେ ଯାହାକୁ ମୁଁ ମୋର ଅତି ପରିଚିତ ଚଲାବାଟ ବୋଲି ବାଛି ନେଇଥିଲି—ସେଇଥିରେ ଚାଲି ଚାଲିତ ମୁଁ ଆଜ ଏ ଅବାଟରେ ପାଦ ଥୋଇଚ, ଦୋଷ ତେବେ ଦେବି କାହାକୁ ?

ମନୁ—ମୁଁ ତୁମକୁ ଅନୁନୟ କରି କହୁଚ ଗୀତା ! ତମେ ଆଉ ଥରେ ଏମିତ ମନରଖା ଯୁକ୍ତିକରି ଆଉ ଅଧିକ ଭୁଲ କରନା । ଏତେଦିନ ହେଲା ତମେ ତାଙ୍କଘରୁ ଗ୍ଲୁଲିଆସିଲଣି, ତମର କ'ଣ ଉଚିତ ନଥିଲା—ଅନ୍ତତଃ ଥରେ ପାଇଁ ରାଜୁଭାଇଙ୍କୁ ଭେଟିବା—

ଗୀତା—ଉଚିତ ଥିଲାକି, ନା ଜାଣେନା—କିନ୍ତୁ ଦରକାର କ'ଣ ଥିଲା ?

ମନୁ—ଦରକାର ଥିଲା ଗୀତା । ଦରକାର ନାହିଁ ବୋଲି କହିବାଠୁ ବଳି ନିଷ୍ଠୁରତା ବୋଧହୁଏ ଆଉ କିଛିନାହିଁ । ତମ ମୁଁହରୁ ଏ ଅଭିଯୋଗ ସେ ଏପର୍ଯ୍ୟନ୍ତ ଶୁଣି ନାହାନ୍ତି । କିନ୍ତୁ ଗୀତା···ଯେତେବେଳେ ସେ ଶୁଣିବେ ଯେ ଆଉ କେହି ନୁହେଁ—ନିଜେ ଗୀତା ତାଙ୍କ ବିରୁଦ୍ଧରେ ଆଣିଛି ଏ ନିଷ୍ଠୁର ଅଭିଯୋଗ, ତାଙ୍କର ସେ ବେଳର ଅବସ୍ଥା ତମେ କଳ୍ପନା କରିପାରୁଛ ? ଧନେ ତମରି ପାଇଁ ଯିଏ ଘରେ ବାହାରେ ସମସ୍ତଙ୍କ ବିରୁଦ୍ଧରେ ଲୁହାର ମଣିଷ ପରି ଦୃଢ଼ ହୋଇ ଠିଆ ହୋଇଥିଲା—ତମର ଏକଥା ଶୁଣିଲେ ତାଙ୍କର ସେ ଲୁହାର ଗ୍ରୁଡ଼ି କେମିତି ଚୂନା ହୋଇଯିବ-ଭାବି ପାରୁଛ ଏକଥା କେବଳ ଏଇ ଆଶଙ୍କାରେ ତାଙ୍କ ପାଖରେ ଯାଇ ଠିଆ ହବାର ସାହସ ମଧ୍ୟ ମୋର ନାହିଁ । ଏପର୍ଯ୍ୟନ୍ତ ତାଙ୍କୁ ମୁଁ ଦେଖା ସୁଦ୍ଧା କରିନି ।

ଗୀତା— ଏ ସଂସାରରେ ଯିଏ ଜଣେ ମାତ୍ର ଲୋକ ଯାହାଙ୍କ ପାଇଁ ମୋର ଶ୍ରଦ୍ଧା-ଭକ୍ତି-ସ୍ନେହ-ସମ୍ମାନ ସବୁକିଛି ଠୁଳ ହୋଇଥିଲା, ଆଜି ବି ତାଙ୍କୁ ସାମ୍ନାରେ କଥା କହିବାର ସାହସ ବୋଧହୁଏ ମୋର ନାହିଁ । ମୋର ଅନୁରୋଧ ମନୋଜବାବୁ- ତାଙ୍କ କଥା କହି ମତେ ଆଉ ଦୁର୍ବଳ କରିଦବାର ·ଚେଷ୍ଟା ଆପଣ କରନ୍ତୁ ନାହିଁ ।

ମନୁ—କିନ୍ତୁ ଗୀତା....

ଗୀତା—କ୍ଷମା କରନ୍ତୁ ମନୋଜବାବୁ···ମୁଁ ଆଉ କିଛି ଶୁଣିବି ନାହିଁ । ମୋର ବାଟ ମୁଁ ବାଛି ନେଇଛି । ଆପଣ ଟିକିଏ ବସନ୍ତୁ....ମୁଁ ଆପଣଙ୍କ ପାଇଁ ଚା ଆଣେ ।

(ହଠାତ୍ ଇଲେକ୍ଟ୍ରିକ ଗଣ୍ଡଗୋଳ ଯୋଗୁଁ ସବୁ ଅନ୍ଧାର ହୋଇଗଲା)

ଗୀତା—ଏ କ'ଣ ? ସବୁ ଅନ୍ଧାର ହୋଇଗଲା ଯେ ?

ମନୁ—ବୋଧହୁଏ ଇଲେକ୍ଟ୍ରିକ୍ ଫେଲ୍ କରିଚି । ଘରର ଆଡ଼େତ
ଅନ୍ଧାର ।

ଗୀତା—ଟିକେ ରୁହନ୍ତୁ, ମୁଁ ଦେଖେ ! (ଗୀତାର ଶେଷକଥା ମଞ୍ଚ ବାହାରେ ଶୁଣାଗଲା । କକ୍ଷ ନୀରବ ଓ ପୂର୍ବପରି ଅନ୍ଧାର, ଏଇ ଅନ୍ଧକାର ଭିତରେ ରଞ୍ଜୁର ଅସ୍ପଷ୍ଟ କଣ୍ଠସ୍ୱର ଶୁଣାଗଲା— )

ରଞ୍ଜୁ—ଏ ଘର ବି ଅନ୍ଧାର ?

ମନୁ—କିଏ ?

ଗୀତା—(ଗୀତା କହୁ କହୁ ଆସିଲା) ଦୁର୍ଭାଗ୍ୟ ମନୋଜବାବୁ ! ମହମବତୀଟାଏବି ପାଇଲି ନାହିଁ । କୁଆଡ଼େ ଗଲେ ଆପଣ....ଅନ୍ଧାରରେ ହଜିଗଲେ ନା କଣ ? ଟିକିଏ ଅପେକ୍ଷା କରନ୍ତୁ । ମହମବତୀ ବର୍ତ୍ତମାନ ଆସିଯିବ ।

ମନୁ—(ଭୟମିଶା କଣ୍ଠରେ) ଗୀତା !

ଗୀତା—ଏ କ'ଣ ? ଆପଣ ଏମିତି ଡ଼ରି ଯାଉଚନ୍ତି କାହିଁକି ? କଣ ଅନ୍ଧାର ହେଇଚି ବୋଲି ? ବିଶ୍ୱାସ କରନ୍ତୁ—ଏଠି ଭୂତ ଭୟ ନାହିଁ । ଅବଶ୍ୟ ବେଳେ ବେଳେ ମଣିଷ ଭୂତ ପାଲଟି ଯାଏ । କଥା କହୁ ନାହାନ୍ତି ଯେ ?....ଓଃ ! ମୋ ସାଙ୍ଗରେ ଏକୁଟିଆ ଏ ଅନ୍ଧାର ଘରେ ଅଛନ୍ତି ବୋଲି ଏ ଭୟ । ବାସ୍ତବିକ୍ ମନୋଜବାବୁ, ଆପଣ ମୋ ନିକଟରେ ଯେମିତି ଏକ ପ୍ରହେଳିକା ! କାଲି ଆସି ମୋ ବାହାଘର କଥା ଗପିଲେ— ଆଉ ଆଜି....ଆଚ୍ଛା ରୁହନ୍ତୁ ! ଦିଆସିଲି ଟାଏ ପାଇଚି । ଦିଆସିଲି କାଠି ଜଳେଇ ଅପଣଙ୍କର ଭୟ ଆଗେ ଭାଙ୍ଗେ ।
(ଦିଆସିଲି କାଠିର ଆଲୋକ ସାହାଯ୍ୟରେ ଗୀତା ଯାହାକୁ ଦେଖିଲା ସେ ମନୋଜ ନୁହେଁ —ରଞ୍ଜୁ )
କିଏ ?

(ଆତଙ୍କରେ ଗୀତା ପଛକୁ ଘୁଞ୍ଚିଗଲେ । ଏହି ସମୟରେ ପୂର୍ବପର ମଞ୍ଚର ସବୁ ଆଲୋକ ଜଳିଉଠିଲା । ମଞ୍ଚର ମଧ୍ୟ ଭାଗରେ ଠିଆହୋଇଛନ୍ତି ରାଜୁ। ଗୋଟାଏ ପାଖରେ ମନୋଜ )

ରାଜୁ—ଅନ୍ଧାର ଭିତରେ ମୋର ଏଠିକି ଆସିବା ଗୋଟାଏ ଆକସ୍ମିକ ଘଟଣା ଛଡ଼ା ଆଉ କିଛି ନୁହେଁ ଗୀତା—ତଥାପି ତୋ ନିକଟରୁ ଏଥିପାଇଁ କ୍ଷମା ମାଗୁଛି । (ଟିକିଏ ପରେ) କଟକ କେବେ ଆସିଲୁ ମନୁ ?

ମନୁ—କାଲି ।

ରାଜୁ—ଆମଘରେ ଆଜି ବୋଧହୁଏ ଯାଇନୁ ?

ମନୁ—ନା—

ରାଜୁ—ଅନେକ ଦୁର୍ଭାବନାର ବୋଝ ନେଇ ମୁଁ ଏଠିକି ଆସିଥିଲି । ସୁଖର କଥା···ବର୍ତ୍ତମାନ ସବୁ ଚିନ୍ତାରୁ ମୁଁ ମୁକ୍ତ ! (ମନୁ ଓ ଗୀତା ନୀରବ) ଥରକୁ ଥର ମୁଁ ଆସି ଏଠୁ ଫେରି ଯାଇଛି— ଗୀତାର ଦେଖା ଟିକିଏ ପାଇନି ! ଆଉ ଆଜି ମୋର ଏ ପରମ ସୌଭାଗ୍ୟ···ହଁ ସୌଭାଗ୍ୟ ନକହି ଆଉ କଣବା ମୁଁ ଏହାକୁ କହିବି···ଆଜି ମୁଁ ଏଠି···(ଦୁଃଖ ଓ ଶୋକରେ ତା'ର କଣ୍ଠରୁଦ୍ଧ ହୋଇ ଆସୁଥିଲା)ନା—ନା- ମୁଁ ପାରିବି ନାହିଁ ! ମୁଁ ଏ ଛଳନା କରି ପାରିବି ନାହିଁ । ଘରେ ବାହାରେ ସମସ୍ତେ ମତେ 'ଠକେଇଛନ୍ତି' ସମସ୍ତେ ମୋ ସହିତ ଛଳନା କରିଛନ୍ତି ! ମୁଁ କିନ୍ତୁ ଏ ଛଳନା କରିପାରିବି ନାହିଁ ।

ମନୁ—କଣ ଆପଣ କହୁଛନ୍ତି ··

ରାଜୁ—(ଉତ୍ତେଜିତ ହୋଇ)ଇଏ ମୋ ଭାଗ୍ୟର ଉପହାସ—ମୋର ଚରମ ଦୁର୍ଭାଗ୍ୟ ଯେ ମୁଁ ତୁମ ଦୁହିଙ୍କୁ ଆଜି ଏ ନିର୍ଲଜ ଅବସ୍ଥାରେ ଏଠି ଦେଖିଲି ।

ମନୁ—ରାଜୁ ଭାଇ···

ରାଜୁ—ଯଦି ଏହାହିଁ ଥିଲା ତୋର ଉଦ୍ଦେଶ୍ୟ—ତା ହେଲେ ଉଚ୍ଚ ଶିକ୍ଷିତ ଯୁବକଟିଏ ତୁ ?...ତୋର ମନର କଥା ତୁତ ସ୍ପଷ୍ଟ ମତେ କହିଦେଇ ପାରିଥାନ୍ତୁ ! ଗୋଟାଏ ପରିବାରର ସର୍ବନାଶ କରି··ତୋର ଯୋଉମାନେ ଅତିପ୍ରିୟ— ସେମାନଙ୍କ ମନରେ ଅବିଶ୍ୱାସର ଜାଲ ଘେରାଇ ଦେଇ····ଏ ପ୍ରହସନ ତୁ କଲୁ କାହିଁକି ?

ମନୁ—ମୋକଥା ଶୁଣନ୍ତୁ ଆପଣ ।

ରାଜୁ—ମୁଁ କାହିଁକି ବିଶ୍ୱାସ କରିବି ନାହିଁଯେ-ତୋ'ର ଶିକ୍ଷାରେ ତୋର ପ୍ରରୋଚନାରେ··ତୋ'ର ସ୍ୱାର୍ଥସିଦ୍ଧି ପାଇଁ ଗୀତା ଏ ଦୁର୍ବୁଦ୍ଧି କରିଚି !

ମନୁ—ଆପଣ ଏ କଣ କହୁଚନ୍ତି ?

ରାଜୁ—କହିବାପାଇଁ ମୋର ଅନେକ କଥା ଅଛି । କିନ୍ତୁ ଦୁଃଖରେ, କ୍ଷୋଭରେ, ଘୃଣାରେ—ମୋର ସମସ୍ତ ଶକ୍ତି ଅବଶ ହୋଇ ପଡ଼ୁଚି, କହିବାର ଶକ୍ତି ଯେମିତି ମୋର ଆଉନାହିଁ ! (ବୁଲି ଯାଉ ଯାଉ ଫେରି) ଆଜି ଏ ମୁହୂର୍ତ୍ତରେ ତୋର ମଙ୍ଗଳ କାମନା କରି ଯିବାଭଳି ମନର ଉଦାରତା ପର୍ଯ୍ୟନ୍ତ ମୁଁ ହରାଇ ବସିଚି ଗୀତ, (ଗୀତା କାନ୍ଦୁଥାଏ) କିନ୍ତୁ ତୋର ଅମଙ୍ଗଳ ଚିନ୍ତା କଲାଭଳି ନିଷ୍ଠୁର ଏବେ ସୁଦ୍ଧା ମୁଁ ହୋଇ ପାରିନି । ଜୀବନର ଗୋଟାଏ ସନ୍ଧି-ସ୍ଥଳରେ ଠିଆହୋଇ ମୁଁ ତୋତେ ଆଜି ବିଦାୟ ଦଉଚି-(ବୁଲିଗଲା । କିଛିକ୍ଷଣ ପାଇଁ ଗୀତା ଓ ମନୋଜ ଦୁହେଁ ନିର୍ବାକ । ଗୀତା ଏ ପର୍ଯ୍ୟନ୍ତ କାନ୍ଦୁଥାଏ)

ମନୁ—ଏଥି କଣ ହେଲା ଗୀତା ?

ଗୀତା—ମୁଁ କିଛି ଜାଣେନି ମନୋଜ ବାବୁ....ମୁଁ କିଛି କହି ପାରିବି ନାହିଁ....ଆପଣ ଯାନ୍ତୁ···ଆପଣ ଚାଲିଯାନ୍ତୁ....(ଜଳେ ଭିତରକୁ ଚାଲିଗଲା)

ମନୁ—ଗୀତା ! ଶୁଣିଯାଅ ଗୀତା !

(ଗୀତା ଆଉ ଫେରିଲା ନାହିଁ ! ମନୋଜ କିଛିକ୍ଷଣ ସେଠି ଠିଆହୋଇ କଣ ଭାବି—ତାପରେ ଦ୍ରୁତ ପଦକ୍ଷେପରେ ବାହାରକୁ ଚାଲିଗଲା)



# ଚତୁର୍ଥ ଦୃଶ୍ୟ

(ରାଜୁ ଘରର ଅଳନ୍ଦ । ସେଇ ରାତିର ଘଟଣା । ମଞ୍ଚ ପୂର୍ଣ୍ଣ ଅନ୍ଧାର । ସମସ୍ତ ରାତିର ଦ୍ୱିତୀୟ ପ୍ରହର ! ନିଃଶବ୍ଦରେ ପ୍ରବେଶ କଲା ରାଜୁ । ଶାନ୍ତ ସେଇଠି ଅପେକ୍ଷା କରିଛ)

ରାଜୁ—ମୋ ଜୀବନରେ ଆଜ ଏଇ ଦିନଟି ଆଲୁଅ ଓ ଅନ୍ଧାରର ଏକ ବିଚିତ୍ର ରହସ୍ୟରେ ଭରା । ଅନ୍ଧାରରେ ମୁଁ ହଜି ଯାଇନି କି ଆଲୁଅରେ ମୁଁ ନିଜକୁ ଖୋଜି ପାଇନି ! ଗଭୀର ରାତିରେ ମୁଁ ଏମିତି ଉଦ୍‌ଭ୍ରାନ୍ତଙ୍କ ପରି ଘରକୁ ଫେରିଲା ବେଳେ, ତମେ ମତେ ଧରା ପକେଇଦବ ବୋଲି, ଯଦି ଅନ୍ଧାରରେ ମୋ ବାଟ ଚାହିଁ ରହିଥାଅ···ତା'ହେଲେ ଶାନ୍ତ, ତମେ ଭୁଲକରିଛ । ଏଇ ଦେଖ, ମୁଁ ନିଜେ ଆଲୁଅ ଜାଳି ତମ ପାଖରେ ଧରାଦଉଛି । (ଆଲୁଅ ଜାଳିଲା) କୁହ ଶାନ୍ତ ! ଏଥର ତମର ପାଳି । କୁହ, ତମେ କ'ଣ କହିବାକୁ ଚାହଁ ?

ଶାନ୍ତ—ଘରେ ବିବାହିତା ସ୍ତ୍ରୀ ଥାଉଁ ଥାଉଁ ଯୋଉ ପୁରୁଷ ରାତି-ଅନ୍ଧାରରେ ଲୁଚିଲୁଚି ପର ଗୁଡ଼ ଯାଇ ପୁଣି ଲୁଚିଲୁଚି ଘରକୁ ଫେରେ—ସେ ଆଉ ଯାହା ହେଉନା କାହିଁକି....ସେ....

ରାଜୁ—ସେ ଭଦ୍ରଲୋକ ନୁହଁ !! ଏଇଆ ତୁମେ କହିବାକୁ ଚାହଁଛ ?

ଶାନ୍ତ—ମୁଁ ଜାଣେନା-ମୁଁ କଣ ତମକୁ କହିବି···କଣ ତମର ଯୋଗ୍ୟ ବିଶେଷଣ ?

ରାଜୁ—ମିଛକଥା ଶାନ୍ତ । ତମେ ସବୁ ଜାଣ....ସବୁ ତମେ କହିପାର, କିନ୍ତୁ ତମ ମନକଥାକୁ ତମେ ମୁହଁ ଖୋଲି କହି ପାରନ,

କାଲିଣ ଏ ପର୍ଯ୍ୟନ୍ତ ତମର ଭରସା ରହିବ ଯେ—ମୁଁ ଏ ସବୁକଥା ଭୁଲି ପୁଣି ସୁନାପିଲାଟି ପରି ଯାଇ ତମ ପାଖରେ ଠିଆ ହେବ ।

ଶାନ୍ତ—ମୁଁ ଚାହେଁ ନା ତମର ଏ କୈଫିୟତ । ମୁଁ ଖାଲି ଏତିକି ଜାଣିବାକୁ ଚାହେଁ ଯେ....କେବେ ତୁମର ବିବାହ ହଉଚି । ଏତିକି ଶୁଣିଲେ ମୁଁ ନିଶ୍ଚିନ୍ତ ମନରେ ଏଠୁ ଚାଲିଯିବ ।

ରାଜୁ—ସେତିକ ନିଶୁଣି ମଧ୍ୟ ମତେ ଛାଡ଼ ଚାଲିଯିବାର ସ୍ୱାଧୀନତା ତମର ଅଛି ଶାନ୍ତ । କିନ୍ତୁ ବିବାହ ? (ହସି) ଗୀତା ପରି ଝିଅକୁ ବିବାହ କରିବାର ସୌଭାଗ୍ୟ ଏଠି ଅଛି କାହାର ?

ଶାନ୍ତ—ଓଃ ! ବନ୍ଦକର ତୁମେ....ଏଠି ଏ ଆଲୋଚନା ତମେ ବନ୍ଦକର । ଗୋଟାଏ ବାରନାରୀର ଜୀବନ କଥା....

ରାଜୁ—(ଚିତ୍କାର କରି) ଶାନ୍ତ !!! (ଟିକିଏ ରହିଯାଇ) ମୁଁ ଠିକ୍ ବୁଝି ପାରୁନି....କିନ୍ତୁ ମୋର ଆଶଙ୍କା ହଉଚି, ମୁଁ ହୁଏତ ପାଗଳ ହୋଇଯିବ ।

ଶାନ୍ତ—(କାନ୍ଦି) ଯଦି ସେତିକ ଦୁର୍ଭାଗ୍ୟ ମୋର ହୋଇଥାନ୍ତା···ମୁଁ ଯଦି ଗୋଟାଏ ପାଗଳ ସ୍ୱାମୀର ସ୍ତ୍ରୀ ହୋଇଥାନ୍ତି···ତାହେଲେ ତମର ଏ ଅପକୀର୍ତ୍ତି ପାଇଁ ଦୁନିଆଁ ଆଗରେ ଦମ୍ଭଧରି ମୁଁ କହି ପାରନ୍ତି—ମୋର ସ୍ୱାମୀ ଅପଦାର୍ଥ—ତାଙ୍କୁ କ୍ଷମାକର । କିନ୍ତୁ ଦିନେ ଯାହାକୁ ପାଇ ସ୍ୱର୍ଗର ଗୃନ୍ଧ ପାଇବାର ଗର୍ବ ମୁଁ କରୁଥିଲି....ଆଜି ତାର କି ପରିଚୟ ମୁଁ କାହାକୁ ଦେବ ? (ବାହାରୁ ମନୋଜ ଆସିଲା)

ମନୋଜ—ଆପଣ···କେତେବେଳେ ଆସିଲେ ଭାଇ?

ରାଜୁ—ଓ ! ତୁ ତା'ହେଲେ ଏଠିକି ଆସି ମୋତେ ପୁଣି ଖୋଜିବାକୁ ଯାଇଥିଲୁ ?

ମନୋଜ—(ରହି ରହି) ହଁ !

ରଜୁ—କାହିଁକ ? ତୁ କ'ଣ ଭାବିଥିଲୁ ମୁଁ କୋଉଁଠି ଆତ୍ମହତ୍ୟା କରିବାକୁ ଗଲାବେଳେ ତୁ ମତେ ସେଠୁ ଉଦ୍ଧାର କରି ଆଣି ଶାନ୍ତ ହାତରେ ଦେଇ ତା'ର ପୁରସ୍କାର ସ୍ୱରୂପ ପାଇଥାନ୍ତୁ ଗୀତାକୁ ?

ମନୋଜ—ମୋ କଥା ଶୁଣନ୍ତୁ—

ରଜୁ—ମୁଁ କାହାର ଆଉ କୌଣସି କଥା ଶୁଣିବାକୁ ଚାହେଁନା । ମୁଁ ଆଜି ସ୍ପଷ୍ଟ ବୁଝି ପାରୁଚି ଯେ ସମସ୍ତେ ମତେ ଠକୁଚନ୍ତି । ନିସ୍ୱାର୍ଥପର ଭାବରେ ମୁଁ ଚାହିଁଥିଲି ଗୋଟାଏ ହତଭାଗିନୀ ଝିଅର ମଙ୍ଗଳ କରିବା ପାଇଁ, କିନ୍ତୁ ତମେମାନେ ସମସ୍ତେ ନିଜ ନିଜର ସ୍ୱାର୍ଥ ପାଇଁ ମତେ ଚରମ ଉପହାସର ପାତ୍ର କରି ରଖିଚ । ତମେମାନେ ସମସ୍ତେ···ସମସ୍ତେ ମୋ ବିରୁଦ୍ଧରେ କରିଚ ଷଡ଼ଯନ୍ତ୍ର ।....ଶାନ୍ତି, ମନୁ, ଗୀତା, ମଦନ ବାବୁ କେହି ଏଥିରୁ ମୁକ୍ତ ନୁହନ୍ତି । ମୁଁ ଆଜି ପ୍ରତିଶୋଧ ନେବି । ମୋ' ମନରେ ଅଶାନ୍ତିର ଯୋଉ ନିଆଁ ତମେମାନେ ଜାଳି ଦେଇଚ ....ସେ ନିଆଁରେ ସମସ୍ତେ ଜଳି ଭସ୍ମ ନ ହବା ପର୍ଯ୍ୟନ୍ତ ମୁଁ ଶାନ୍ତ ହେବି ନାହିଁ—ନା ମୁଁ ଶାନ୍ତ ହେବି ନାହିଁ । ଆଜି ଦୁନିଆ ଜାଣିବ, ମୋ' ସହିତ ଗୀତାର ପ୍ରକୃତ ସମ୍ବନ୍ଧ କ'ଣ ?

(ଉଦଭ୍ରାନ୍ତଙ୍କ ପରି ବାହାରକୁ ଚାଲିଗଲେ ।)

ମନୁ—ଇଏ କ'ଣ ହେଲା ନୂଆବୋଉ ?

ଶାନ୍ତି—ମୁଁ କିନ୍ତୁ ଠିକ ଏଇଆ ଆଶଙ୍କା କରିଥିଲି ମନୁ !

ମନୁ—କିନ୍ତୁ ନୂଆବୋଉ—

ଶାନ୍ତି—ତମେ ଅପାଙ୍କ ପାଖକୁ ଗୋଟାଏ ଟେଲିଗ୍ରାମ କରି ମନୁ—ନାହିଁ ତ କାଲି ସକାଳେ ନିଜେ ଟିକିଏ ବୁଲି ଯାଅ—

ମନୋଜ—ସିଏ ତ ପରର କଥା ! ଭାଇ ପୁଣି ଏତେ ରାତିରେ କୁଆଡ଼େ ଗଲେଣି ଯେ ?

ଶାନ୍ତ—ଯିବା ପାଇଁ ତାଙ୍କର ତ ଆଉ ଦ୍ୱିତୀୟ ସ୍ଥାନ କୋଉଠି ନାହିଁ ।

ମନୋଜ—ତମେ ଭୁଲ କହୁଚ ନୂଆବୋ ।

ଶାନ୍ତ—ତାଙ୍କର ଏ ସବୁ କଥା ଶୁଣି ସାରିଲା ପରେ ମୋ'ର କର୍ତ୍ତବ୍ୟ କ'ଣ କହି ପାରିବ ମନୁ ?

ମନୋଜ—ମୋର କିନ୍ତୁ ଭୟ ହଉଚି ନୂଆବୋ—

ଶାନ୍ତ—ଭୁଲ କହୁଚ ମନୁ ! ସେ ବର୍ତ୍ତମାନ ସବୁ ଭୟ—ସବୁ ଆଶଙ୍କାର ବହୁ ଦୂରରେ ! ତମେ ପୁଣି କେତେବେଳେ ଯିବ କୁହ ?

ମନୋଜ—ପୁଣି ତ ମୁଁ ଯିବି ! କିନ୍ତୁ ଭାଇ ଯୋଉ ଅବସ୍ଥାରେ ଏତେବେଳେ ବାହାରକୁ ଗଲେ—

ଶାନ୍ତ—ମୁଁ ଆଉ କୌଣସି କଥା ଶୁଣିବି ନାହିଁ—

(ଭିତରକୁ ଗଲା)

ମନୋଜ—ଶୁଣିଯାଅ ନୂଆବୋ ! ଶୁଣିଯାଅ—

(ପଛେ ପଛେ ଚାଲ)



## ପଞ୍ଚମ ଦୃଶ୍ୟ

(ଧ୍ରୁବଙ୍କ ସେଇ କକ୍ଷ । ମଦନ ଅସ୍ଥିର ହୋଇ ପଦଚାରଣ କରୁଥାନ୍ତି ଆସିଲା ସୁନାମା)

ମଦନ—ବିଛଣା ପତ୍ର ସବୁ ବନ୍ଧା ସରିଲା ?

ସୁନାମା—ହଁ ! ସବୁ ସରିଲାଣି ! ଏଇ ପାହାନ୍ତାଟାରେ କ'ଣ ଯିବା ବାବୁ ?

ମଦନ—ଆଉ ଅଧ ଘଣ୍ଟାଏ ଭିତରେ ଆମେ ହାଇଲେଭେଲ୍ ପୋଲ ପାଖରେ ଯାଇ ପହଞ୍ଚିବା ଦରକାର । ସେଇଠି କି ତାଙ୍କ ମଟର ଆସିବ ! ସେଇଠୁ ମଟରରେ ସିଧା କଲିକତା

ସୁନାମା—ରାତି ଆସି ପାହାନ୍ତା ହେଲାଣି—ଆଉ ଟିକିଏ ଆଗରୁ ଯାଇଥିଲେ ଭଲ ହୋଇଥା'ନ୍ତା ।

ମଦନ—ମୁଁ କ'ଣ କରିବି କହ ? ତାଙ୍କ ହାତର କଥା । ଦେଖୁଚୁ ପରା ଭୁବନେଶ୍ୱରରୁ ଫେରୁ ଫେରୁ ରାତି ଦୁଇଟା ବାଜିଲା !.... ହଁ ଗୀତା କ'ଣ କରୁଚି ?

ସୁନାମା—ରାଜୁବାବୁ ଆସିଲା ବେଳଠୁ ତ ଆଖିରୁ ଖାଲି ତା'ର ଲୁହ ଝରୁଚି । ହେଲେ ଏଣେ ଯିବି ବୋଲି ଗୋଡ଼ ଟେକି ବସିଚି । କହୁଚି—ରାତି ପାହିବା ଆଗରୁ କେମିତି ସେ କଟକ ଛାଡ଼ି ପଳେଇବ !

ମଦନ—ହଉ ତୁ ଯା—ତେଣେ ସବୁ ଠିକ ଠାକ କର !

ସୁନାମା—ହଉ ବାବୁ...ଯାଉଚି !

( ସୁନାମା ଚାଲିଗଲା । ଟିକିଏ ପରେ ଆସିଲା ବିଶୁ )

ମଦନ—କିଏ ? ବିଶୁ ! ତମେ ଏତେବେଳେ ଏଠି କାହିଁକି ?

ବଶୁ—କାମ ଅଛି ।
ମଦନ—ମୁଁ କହିଥିଲି ନା—ଏ ହତା ଛାଡ଼ି ଚାଲି ଯିବାକୁ ?
ବଶୁ—ତମେ ଯାହା କହୁ ଥିବ—ତା' ହୋଇ ଯାଉଥିଲେତ ଅନେକ କଥା ହୋଇଥା'ନ୍ତା ।
ମଦନ—ବଶୁ !
ବଶୁ—ଗୀତା ଆଜ ତା' ହେଲେ କଲିକତା ଯାଉଛି ?
ମଦନ—ସେ କଥା ପଚାରିବାକୁ ତମେ କିଏ ?
ବଶୁ—ଆଚ୍ଛା ! ତା' ହେଲେ ଠିକ୍ ବେଳରେ, ଠିକ୍ ଜାଗାରେ ଦେଖା ଦେଖି ହବା ! (ଯିବାକୁ ଉଦ୍ୟତ)
ମଦନ—କ'ଣ ପୋଲିସ ଡାକି ଯାଉଚୁ ?
ବଶୁ—ମୋ କାମ ତ ମୁଁ କରିବି ! ହେଲେ ଜାଣି ରଖିଥା—ରାଜୁ ବାବୁ ତମ ନାଆଁରେ ପୋଲିସ କେସ୍ କରିବ ଆଉ ମୁଁ ସେଥିରେ ସାକ୍ଷୀ ହେବି । (ଚାଲିଗଲା)
ମଦନ—(ଡ଼ାକିଲେ) ସୁନାମା—ସୁନାମା.... (ସୁନାମା ଆସିଲା) ଗୀତା ଉପରେ ଅଛି ?
ସୁନାମା—ହଁ ।
ମଦନ—ଲୁଗା ପଟା ପିନ୍ଧିଲାଣି ?
ସୁନାମା—ନା—
ମଦନ—ଯା—ତାକୁ କହ ଲୁଗା ପଟା ପିନ୍ଧୁ—ସାଙ୍ଗେ ସାଙ୍ଗେ ବାହାରି ଯିବାକୁ ହବ !

(ସୁନାମା ଚାଲିଗଲା । ଟିକେ ପରେ ଆସିଲା ରାଜୁ । ରାଜୁର କଥାବାର୍ତ୍ତାରୁ ଜଣା ଯାଏ ସେ ଯେପରି ମାତାଲ୍ ।)

ମଦନ—ଏତେ ରାତିରେ ତମେ କାହିଁକି ଆସିଚ ରାଜୁବାବୁ ?
ରାଜୁ—ତମର କୌଣସି କ୍ଷତି କରିବାକୁ ମୁଁ ଆସି ନାହିଁ ।

ମଦନ—ତମେ ଫେରିଯାଅ । ଗୀତା ସହିତ ତମର ଦେଖା ହୋଇ ପାରିବ ନାହିଁ ।

ରାଜୁ—ଗୀତା ସହିତ ଦେଖା କରିବାକୁ ଚାହିଁଥିଲେ ତମ ସହିତ ଆସି ଦେଖା କରିଥା'ନ୍ତି କାହିଁକି ?

ମଦନ—ତୁମେ—ତୁମେ ମଦ ପିଇଚ ରାଜୁ ବାବୁ ?

ରାଜୁ—ମୁଁ ମଦ ପିଇଚି ସତ · କିନ୍ତୁ ମୁଁ ତ ମାତଲାମି କରିବାକୁ ଆସିନି ?

ମଦନ—ମୁଁ ବିଶ୍ୱାସ କରି ପାରୁନି ଯେ ତମେ ମଦ ପିଅ ?

ରାଜୁ—ପିଏ ନାହିଁ ! ଆଜି କିନ୍ତୁ ପିଇଚି ।

ମଦନ—କ'ଣ ଗୀତା ପାଇଁ ?

ରାଜୁ—ହଁ ଗୀତା ପାଇଁ । ମଦନ ବାବୁ—ମୁଁ ଯାହା ଶୁଣୁଚି—ସତ ?
(ପକେଟରୁ ମଦ ବୋତଲ ବାହାର କରି ଟେବୁଲ ଉପରେ ରଖିଲା)

ମଦନ—କ'ଣ ଶୁଣୁଚ ତମେ ?

ରାଜୁ—ଗୀତା କଟକ ଛାଡ଼ି ଚାଲି ଯାଉଚି—କଲିକତା କି ବମ୍ବେ ?

ମଦନ—ଯଦି ସତ ହୋଇଥାଏ ?

ରାଜୁ—ତମେ ମୋର ବନ୍ଧୁ ମଦନ ବାବୁ—ଏତିକି ଉପକାର ତମେ ମୋର କର ! ପଛର ସବୁକଥା ମୁଁ ଭୁଲିଯିବି ।

ମଦନ—କି ଉପକାର ?

ରାଜୁ—ଆଜି....ଆଜି ଏଇ ରାତି ଭିତରେ ଗୀତା ଯେମିତି କଟକ ଛାଡ଼ି ଚାଲିଯିବ !

ମଦନ—ତମେ ମତେ ପରୀକ୍ଷା କରୁଚ ରାଜୁ ବାବୁ ?

ରାଜୁ—ତା' ଅର୍ଥ ତମେ ମୋ କଥା ବିଶ୍ୱାସ କରୁନା । କିନ୍ତୁ ଏ ଅବସ୍ଥାରେ ଲୋକ କ'ଣ ମିଛ କହିପାରେ ? ଆଉ କେହି ନ ଜାଣନ୍ତୁ....ତମେତ ଜାଣ....ଏମିତି ମାତାଲ୍ ଥିବା ଅବସ୍ଥାରେ

କେବଳ ଲୋକ ତା' ଜୀବନର ନିଗୂଢ଼ତମ ସତ କଥାଟା ବାହାରେ ପ୍ରକାଶ କରିଥାଏ ।

ମଦନ—ଜାଣେ । କିନ୍ତୁ ମୁଁ ଶୁଣିଛି, ଗୀତାକୁ ମୁଁ ନେଇ ଆସିଛି ବୋଲି ମୋ ନାଆଁରେ କେଶ କରିବାର କଳ୍ପନା ଏ ପର୍ଯ୍ୟନ୍ତ ତମର ରହିଛି ।

ରାଜୁ—ସେଇଟା କେବଳ ଶୁଣା କଥା ।

ମଦନ—ତା' ହେଲେ ତମେ ମତେ ଖଣ୍ଡେ ଲେଖି ଦେଇ ପାରିବ ?

ରାଜୁ—କ'ଣ ?

ମଦନ—ଏଇ....ବନ୍ଧୁ ଭାବରେ ଖଣ୍ଡେ ଚିଠି ! ତମରି ଇଚ୍ଛା ଅନୁସାରେ ଗୀତା ଏଠିକି ଆସିଛି—ଆଉ ତା'ର ଦେଖା ଶୁଣାର ଭାର ମୋ ଉପରେ···ଏଇ ମର୍ମରେ ଖଣ୍ଡେ ଚିଠି··· ଲେଖି ଦେଇ ପାରିବ ?

ରାଜୁ—ଏଇ ମୁହୂର୍ତ୍ତରେ । (ବୋତଲ ହାତରେ ଧରି କଣ ପିଇଥିଲା ଖୋଜିଲା)

ମଦନ—ଠିକ୍ ଏ ବସ—ଆଣି ଦଉଛି ।

(ମଦନ ଭିତରକୁ ଚାଲିଗଲେ। ସାଙ୍ଗେ ସାଙ୍ଗେ ରାଜୁର ମୁହଁର ଭାବ ପରିବର୍ତ୍ତନ ହୋଇଗଲା—ଜଣାଗଲା ସେ ଆଦୌ ମାତାଲ ନୁହେଁ । କିନ୍ତୁ ତା'ର ମାନସିକ ଦ୍ୱନ୍ଦ୍ୱ ଆଉ ଯନ୍ତ୍ରଣା ଯେମିତି ବେଳକୁ ବେଳ ବୃଦ୍ଧି ପାଉଥାଏ)

ରାଜୁ—ଭଗବାନ ! ମତେ ଶକ୍ତି ଦିଅ—ମନର ବଳ ମତେ ଦିଅ ! (ମଦନ ଆସିଲେ । ରାଜୁ ସେତେବେଳକୁ ଟେବୁଲଉପରେ ଝୁଙ୍କି ପଡ଼ିଥାଏ, ମଦନ ଦୁଇଟା ଗ୍ଲାସ ଆଣି ଟେବୁଲ ଉପରେ ରଖିଲେ)

ରାଜୁ—ଦୁଇଟା ଗ୍ଲାସ ଆଣିଛ ତ ମଦନ ବାବୁ ?

ମଦନ—ଗୋଟାଏ ଟେବୁଲରେ ଦୁଇଜଣ ବନ୍ଧୁ ବସିଥିବା ବେଳେ ଗୋଟାଏ ଗ୍ଲାସରେ ଚଳେନା....ଏତିକି ଜ୍ଞାନ ଅବଶ୍ୟ ମୋର ଅଛି ।

ରାଜୁ—(ସିଧା ହୋଇ ବସି ପୁଣି ମାତାଲ ହବାର ଛଳନା କରି)ଧନ୍ୟବାଦ !
(ବୋତଲଟାକୁ ମଦନ ଆଡକୁ ଠେଲି ଦେଲା)

ମଦନ—କିନ୍ତୁ ରାଜୁ ବାବୁ ! ମୁଁ ତ ବୁଝି ପାରିଲି ନାହିଁ—ତମର ଉଦ୍ଦେଶ୍ୟ ?

ରାଜୁ—ଏଇ ସରଳ ସହଜ କଥାଟାକୁ ତମେ ବୁଝି ପାରିଲ ନାହିଁ....

ମଦନ—ମନୋଜ···ମନୋଜ ତା' ହେଲେ....

ରାଜୁ—ତାହାହିଁ ମୋ ଜୀବନର ସବୁଠୁ ବଡ ଦୁଃଖ ।

ମଦନ—(ସ୍ମିତ ହସି) ହୁଁ ! (ଦୁଇଟି ଗ୍ଲାସରେ ମଦ ଢାଳିବାକୁ ଲଗିଲେ । ରାଜୁ ଯେମିତି ବେଲକୁ ବେଲ ଅସ୍ଥିର ହୋଇ ପଡୁଥାଏ । ଢାଳି ସାରି ମଦନ ଗୋଟିଏ ଗ୍ଲାସ ରାଜୁ ହାତକୁ ବଢ଼େଇ ଦେଲେ)

ମଦନ—ନିଅ ରାଜୁ ବାବୁ ! ଅନେକ କହନ୍ତି ଏ ବନ୍ଧୁତାଠାରୁ ବନ୍ଧୁତା ଆଉ ପୃଥିବୀରେ ନାହିଁ ।

ରାଜୁ—(ହାତରେ ଗ୍ଲାସ ଧରି) ତମର କଥା ସତ୍ୟ ହେଉ ।
(ଦୁହେଁ ଓଠ ପାଖକୁ ଗ୍ଲାସ ଉଠାଇଲେ । କିନ୍ତୁ କେହି ପିଇ ନ ଥାନ୍ତି । ରାଜୁ ମାତାଲ ହବାର ଅଭିନୟ କରି ଗୁଲୁଥାଏ, ମଦନ ଗୁହିଁ ରହିଥାଏ ରାଜୁକୁ । ମଦନ ଆଖିରେ ଏଥର ଅର୍ଥପୂର୍ଣ୍ଣ ଗୁହାଣୀ )

ମଦନ—ହାତରେ ଗ୍ଲାସଟା ଧରି ବସି ରହିଲ ଯେ ରାଜୁ ବାବୁ ?···

ରାଜୁ—ଏଁ କ'ଣ କହିଲ ?

ମଦନ—ତମକୁ ଖୁବ୍ ନିଶା ହୋଇଛି ବୋଧହୁଏ....ମୋ' କଥା ବୁଝି ପାରୁନ ?

ରାଜୁ—ଏଁ···ନା....ମୁଁ....ମୁଁ....କିନ୍ତୁ ତମେ ଯେ ଏ ପର୍ଯ୍ୟନ୍ତ....
(ମଦନ ଖୁବ୍ ଜୋରରେ ହସି ଉଠିଲା । ରାଜୁ ବୁଝି ପାରିଲା ଏ ହସର ଅର୍ଥ । ତଥାପି ସେ ଅଭିନୟ କରି ଗୁଲିଥାଏ)

ରାଜୁ—କ'ଣ ହେଲା ମଦନ ବାବୁ....? ହସିଲ କାହିଁକି

ମଦନ—ମଣିଷ ଜୀବନରେ ସବୁଠୁ ବଡ଼ ଦୁଃସାଧ୍ୟ କାମ କ'ଣ ଜାଣ....
ରାଜ କିଶୋର ? ନିଜେ ଯାହା ନୁହଁ ··ଛଳନା କରି, ଅଭିନୟ କରି ଅନ୍ୟ ଆଖିରେ ତା' ସତ ବୋଲି ପ୍ରତିପାଦିତ କରିବା !

ରାଜୁ—(ସାଧାରଣ ଅବସ୍ଥାକୁ ଫେରିଆସି ) ମଦନ ବାବୁ !

ମଦନ—ତୁମେ ମଦ ଖାଅ ନାହିଁ—ଆଜିବି ଖାଇନ....ଅଥଚ ମୋ' ଆଖିରେ ଧୂଳି ଦେଇ ମାତାଲ ହବାର ଅଭିନୟ କରୁଚ ?

ରାଜୁ—ସବୁ ବୁଝି ପାରିଚ ତା' ହେଲେ ?

ମଦନ—କିନ୍ତୁ କି ନିର୍ବୋଧ, ଆଉ କି ମିଚ ତୁମେ ! ତମର ଶିକ୍ଷା··· ତମର ପ୍ରତିଷ୍ଠା....ସବୁ ଭୁଲି ତମେ ଏତେବେଳେ ଏ ଅବସ୍ଥାରେ ଆସିଥିଲ, ମତେ ଠକି ମୋ' ପାଖରୁ ଗୀତାକୁ ନେଇ ଯିବା ପାଇଁ ? ?

ରାଜୁ—ତମ ଆଖିରେ ମୁଁ ଯେତେ ନିର୍ବୋଧ ହେଲେ ବି, ଗୀତାକୁ ନ ନେଇ ମୁଁ ଆଜି ଏଠୁ ଯାଉନି ।

ମଦନ—କ'ଣ ବଳ ପ୍ରୟୋଗ କରି ?
(ରାଜୁ ମନରେ ପୂର୍ବର ସେଇ ଦ୍ୱନ୍ଦ୍ୱ··ସେଇ ଯନ୍ତ୍ରଣା )

ରାଜୁ—ବଳ ପ୍ରୟୋଗ ! ! ବେଶ୍....

ମଦନ—ତମ ମନ ଭିତରର ଏ ବଦଳର ପରିଚୟ ଆଉ କେହି ପାଉ ବା ନ ପାଉ, ଗୀତା ତମ ଘରେ ଆସି ରହିବାର ପରେ ପରେ ....ମୁଁ ସେ ପରିଚୟ ପାଇଥିଲି··ଆଉ ଆଜି ଏଇଠି ହବ ତା'ର ସମାପ୍ତି !

ରାଜୁ—ସ୍ୱେ' ତୁମେ କ'ଣ କହୁଚ ମଦନ ?

ମଦନ—ଜଣେ ବେପରୁଆ ଭାଗାବଣ୍ଡ ବୋଲି ମୋର ଯେତେ ଦୁର୍ନାମ ଥିଲେ ବି, ସବୁଦିନେ ତମେ ମତେ ତୁମର ବନ୍ଧୁ ବୋଲି ସ୍ୱୀକାର କରି ଆସିଚ ।

ରାଜୁ—ଆଉ ଏଇ ତା'ର ପ୍ରତିଦାନ ! ନା ମଦନ ବାବୁ ?
(ଏତିକି ବେଳେ ଆସିଲା ଗୀତା) ।

ମଦନ—ଏଇତ ଗୀତା ! ଏକାବେଳକେ ଯିବାପାଇଁ ପ୍ରସ୍ତୁତ ହୋଇ ଆସିଛ । କୁହ ଗୀତା ! ତମେ ମୋ ସହିତ କଲିକତା ଯିବ' ନା ତୁମ ରାଜୁଭାଇ ସହିତ ?

ଗୀତା—ରାଜୁଭାଇ···

ରାଜୁ—(ଯନ୍ତ୍ରଣାରେ ଛଟପଟ ହୋଇ) ମଦନବାବୁ ।

ମଦନ--ମୋର ଏଥିରେ କିଛିସ୍ୱାର୍ଥ ନାହିଁ···ଏଇଠି ତମର ଆଖିଆଗରେ ଠିଆ ହୋଇଛି ଗୀତା, ପଚାର ତାକୁ—ସେ କହୁ-ଏଠି ଆସି ସେ ରହିବା ଦିନଠୁ କେହି କେବେ ତାର ଅସମ୍ମାନ କରିଛି··· ତା ପାଦର ଆଙ୍ଗୁଳି ଛୁଇଁବାର ସାହାସ ପର୍ଯ୍ୟନ୍ତ,କେହି କେବେ କରିପାରିଛି ?? ···ଗୀତା ଆଜି କଲିକତା ଯିବାକଥା ସତ । କିନ୍ତୁ ଆଉସବୁ କଥା ମିଛ । ସୁଜନବାବୁ ଫିଲ୍ମ କରୁ ନାହାନ୍ତି, କି ଗୀତା ଫିଲ୍ମରେ ଅଭିନୟ କରୁନି । ଏଇ ସବୁ ଜଞ୍ଜାଳରୁ କିଛିଦିନ ସକାଶେ ମୁକ୍ତି ପାଇବା ପାଇଁ ମୁଁ ଗୀତାକୁ କଲିକତା ନେଉଥିଲି । ଆଉସବୁ କଥା ମିଛ....ଛଳନା—ଗୋଟାଏ ଭାନୁମତିର ଖେଳ ! କିନ୍ତୁ ମୁଁ ସ୍ୱୀକାର କରୁଛି ରାଜୁବାବୁ ଯେ, କେବଳ ମୋର ଶିକ୍ଷାରେ ସୁନାମା ବନ୍ଧୁ ମିଛ—ବନ୍ଧୁ କାଳୁନିକ କଥାକହି ଗୀତାକୁ ଏଠିକି ନେଇ ଆସିଲା । କିନ୍ତୁ ବନ୍ଧୁ—ଏଥିରେ ମୋର ସ୍ୱାର୍ଥ ନଥିଲା—ଥିଲା ତମର ସ୍ୱାର୍ଥ ! ମୋ ସ୍ୱାର୍ଥ ପାଇଁ ଗୀତାକୁ ମୁଁ ଏଠିକି ଆଣିଥିଲେ ଏଠିଆଜି ଗୀତା ନଥାନ୍ତା, କି ମୁଁ ନଥାନ୍ତି । ତୁମେ କୁହ-ସେଦିନର ସେ ଘଟଣା ପରେ....ଗୀତା ପଦେ ତମର ଘରେ

ଥାନ୍ତା, ତା'ହେଲେ କଣ ହେଇଥାନ୍ତା ତମର ଆଉ ତମ ଘର ସଂସାରର ଅବସ୍ଥା....(ଧିରେ ଧିରେ ରାଜୁ ମନରୁ ସବୁ ଦ୍ୱନ୍ଦ କଟି ଯାଇ ତା' ମୁହଁ ଯେମିତି ଉଜ୍ଜ୍ୱଳ ହେଇ ଆସୁଥାଏ)

ରାଜୁ—ମଦନବାବୁ !

ମଦନ—ଅଥଚ ତମେ ଆଜି ଆସିଥିଲ ମୋ ସହିତ ଛଳନା କରି ନହେଲେ ମୋଠୁ ଜୋରକରି ଗୀତାକୁ ନେଇ ଯିବାକୁ !!

ରାଜୁ—ମଦନ ବାବୁ ! ମୁଁ ଯାହା ପାରିନ, ତା ତମେ ପାରିଚ, ତୁମେ ମୋର ବନ୍ଧୁ-ମୋର ଭୁଲପାଇଁ ତୁମେ ମତେ କ୍ଷମା କରିପାର । କିନ୍ତୁ ଗୀତା···ଗୀତା କଣ ମତେ କେବେହେଲେ କ୍ଷମା କରି-ପାରିବ ?

ମଦନ - ରାଜୁବାବୁ, ଦିନେ ଗୀତା ପାଇଁ ତୁମେ ଯାହା କରିଥିଲ ସେ କଥା କଣ ଗୀତା କେବେ ଭୁଲିପାରିବ ଯେ ସେ ତମକୁ କ୍ଷମା କରିବାର ପ୍ରଶ୍ନ ଉଠୁଚି ? (ବାହାରକୁ ଚାହିଁ)କିଏ—ବିଶୁ କ'ଣ ପୋଲିସ ଡାକି ଆସିଲ ? (ବିଶୁଆସିଲା)

ବିଶୁ—ହେଲେ ସାର, ପୋଲିସ୍ କଣ ଏମିତିକା ବୋକା ହେଇଚନ୍ତି ଯେ ମୋ କଥାରେ ଏଠିକି ଚାଲି ଆସିବେ ? ପୋଲିସ ଆସିଲେ ନାଇଁ—

ମଦନ—(ବାହାରକୁ ଚାହିଁ) ଆଉ ତେବେ ସେ କିଏ ଆସିଚନ୍ତି ? ଆରେ ଶାନ୍ତିଦେବୀ, ଆସନ୍ତୁ,-(ଶାନ୍ତି ଆସିଲା) କ'ଣ ଦେଖୁଚନ୍ତି ? ଏଠି ଅଛି ଗୀତା ଆଉ ମୁଁ ଏ ଟେବୁଲ ଉପରେ ବୋତଲ ଆଉ ଗ୍ଲାସ···ଆଉ ଅଛନ୍ତି ଆପଣଙ୍କର ସ୍ୱାମୀ···

ଶାନ୍ତି—ମୁଁ ଅନେକ ବେଳୁ ଆସି ଆପଣଙ୍କର ସବୁକଥା ଶୁଣିଚି··· ଆପଣ ଆମର ଯୋଉ ଉପକାର କରିଚନ୍ତି, ତା ମୁଁ ଏ ଜନ୍ମରେ ଭୁଲି ପାରିବି ନାଇଁ

ମଦନ—ଶୁଣୁଚ ତ ରାଜ୍‌ବାବୁ ! ତମର ଏଥିରେ ଈର୍ଷା ହେଇ ପାରେ....ହେଲେ ମୋ ପରି ଅସାମାଜିକ ଜୀବ ପକ୍ଷରେ ଶାନ୍ତ ଦେବୀଙ୍କ ମୁହଁରୁ ଏମିତି ପଦେ ଅଧେ କଥା ଶୁଣିବା ଯେ ମହା ଭାଗ୍ୟର କଥା । କିନ୍ତୁ....ମନୋଜ କୁଆଡେ଼ ଗଲା ? ମନୋଜ ଆସିନି ?

ଶାନ୍ତ—ମନୋଜ ?

ମଦନ—ଆହା, ଏତେକଥା ପରେ ମତେ କ'ଣ ଆଉ ମୁହଁ ଖୋଲି ସବୁ କଥା କହିବାକୁ ପଡ଼ିବ ?

ଶାନ୍ତ—ମୁଁ ଜାଣେ ମଦନବାବୁ । (ମନୁ ଗୀତାକୁ···ଡ଼ାକିଲା) । ମନୁ, ମନୁ, (ମନୁ ଆସିଛି) ନିଅ ତମ ଘରଣୀକୁ ନିଅ

ମନୁ—ନାଇଁ ନୁଆବୌ···ମୁଁ

ଶାନ୍ତ—(ଗୀତାକୁ ପାଖକୁ ଆଣି)ଗୀତା, ଦିନେ ମଉସା ମତେ ଯାହା କହିଥିଲେ ତା ଆଜି ସତ ହେଇଚି···ତମେ ଆଜି ତମ ହାତ ମୁଠାରେ ପାଇଚ ତମର ସ୍ୱର୍ଗ । (ଗୀତା ଲାଜରେ ମୁହଁ ଲୁଚାଇଲା)

ବିଶୁ—(ମଦନକୁ) ସାର, ସାର,

ମଦନ—ଓଃ କାହିଁକି ଏତେବେଳେ ସାର ସାର ହଉଚ?

ବିଶୁ—ଶେଷକୁ ମୋ ଆଖିରେ ବି ଭେଲକି ଲଗେଇ ଦେଲେ ? ଏସବୁ ମିଛ ? କେବଳ ଗୀତା ଦେଈଙ୍କ ଭଲ ପାଇଁ ଏ ଭାନୁମତୀର ଖେଳ ଆପଣ ରଚିଲୁ କରି ଦେଇଥିଲେ ?

ମଦନ—ହଁ ବିଶୁ ; କେବଳ ଗୀତା ଆଉ ରାଜୁର ମଙ୍ଗଳ ପାଇଁ, ମତେ ଏଠି ଏକରକମ ଘର ବାନ୍ଧିବାକୁ ପଡ଼ିଥିଲା । ଏଣିକି ପୁଣି ଆମର ଭେଟହେବ ସେଇଠି—ସେଇ ଘର ଆଉ ଅଫିସର ବାହାରେ···ସେଇ ତୃଷ୍ଣାସ୍ଥ ସ୍ଥାନ....

ବଶୁ—ଥାଙ୍କ୍ୟୁ ସାର (ଏହିକବେଳେ ସୁନାମା ହାତରେ ଗୋଟାଏ ସୁଟକେଶ୍ ଧରି ଆସିଛି)

ମଦନ—ଏ କିଏ ସୁନାମା ?

ସୁନାମା—ମୋ ଗୀତା ଦେଈ ଯୁଆଡ୍ରେ ମୁଁ ସିଆଡ୍ରେ । ଗୀତା ଦେଈଙ୍କ ପାଇଁ ଏତକ କାମ ମୁଁ କରିଥିଲି ବୋଲି ମୋ ମା ଆଉ ବାବୁଙ୍କ ମୁହଁରେ ଏ ହସ ପୁଣି ଦେଖିଲି । ମୁଁ ତାଙ୍କୁ ଛାଡ଼ି ରହି ପାରିବନି । (ହସି ଉଠିଲେ ମଦନ)

ମଦନ—ଭୋର ହୋଇ ଆସିଲା ବୋଧହୁଏ ।

ରାଜୁ—ହଁ, ସେଦିନ ଠିକ୍ ଏମିତି ଭୋର ସମୟରେ ଗୀତାର ଅସରନ୍ତି ଲୁହ ଆଉ କାନ୍ଦ ଭିତରେ ଯୋଉ ନାଟକର ସୂତ୍ରପାତ ହୋଇଥିଲା....ଆଜି ଏଇ ଭୋର ବେଳାରେ ଗୀତାର ହସ ଖୁସି ଭିତରେ ହେଲା ଯାର ସମାପ୍ତି । ମୋ ପକ୍ଷରେ ଏହା ମହାଭାଗ୍ୟ-ମହା ଆନନ୍ଦର କଥା···(ସମସ୍ତଙ୍କ ମୁହଁରେ ହସ ଫୁଟି ଉଠୁଥାଏ)

—ସମାପ୍ତ—